# ଅମର ଗୌରବ




ମାଧବ ଚନ୍ଦ୍ର ମିଶ୍ର

# ଅଗ୍ରଲେଖ

'ଅମର ଗୌରବ' ରାମାୟଣ ଚରିତ ଅବଲମ୍ବନରେ ରଚିତ ହୋଇଥିଲେହେଁ ଏଥିରେ କବି ଶ୍ରୀ ମାଧବ ଚନ୍ଦ୍ର ମିଶ୍ର ନିଜର ମୌଳିକତା ପ୍ରଦର୍ଶନ କରିଅଛନ୍ତି । ରାମାୟଣର ପାଠକମାନେ ସାଧାରଣତଃ ରାମଚନ୍ଦ୍ରଙ୍କର ଗୁଣାବଳୀର କୀର୍ତ୍ତନ ଶୁଣିବାରେ ଅଭ୍ୟସ୍ତ । କିନ୍ତୁ ରାବଣ ଚରିତ୍ର ମଧ୍ୟରେ ଯେଉଁ ମହିମା ଓ ମହତ୍ତ୍ୱ ଅନ୍ତର୍ନିହିତ ଥିଲା, ତାହା ବିଶେଷ ଭାବରେ ଫୁଟାଇବାକୁ କବି ଏଥିରେ ଚେଷ୍ଟା କରିଅଛନ୍ତି । ସ୍ଥାନେ ସ୍ଥାନେ ଅଭିନବ କଳ୍ପନାର ସଂଯୋଗ ଦ୍ୱାରା ସେ କାବ୍ୟଟିକୁ ସରସ ଓ ସୁଖପାଠ୍ୟ କରିପାରିଛନ୍ତି । ଯୁଗର ପରିବର୍ତ୍ତନ ସଙ୍ଗେ ସଙ୍ଗେ ପ୍ରାଚୀନ କାଳର ଘଟଣା ଓ ବର୍ଣ୍ଣନା କିପରି ନୂତନ ଭଙ୍ଗୀରେ ରୂପାୟିତ ହୋଇ ପାରେ, ଏହି କାବ୍ୟ ପାଠକଲେ ତହିଁର ସନ୍ଧାନ ଉପଲବ୍ଧି କରି ହୁଏ । କବି ଶ୍ରୀ ମିଶ୍ରଙ୍କର ଏହି ପରିକଳ୍ପନା ଯଥାର୍ଥଭାବରେ ଆଲୋଚିତ ହେଉ । ଇତି ।

ଶ୍ରୀ ସନ୍ତୋଷ କୁମାର ସାହୁ
ସଭାପତି
ଓଡ଼ିଶା ସାହିତ୍ୟ ଏକାଡେମୀ

# ଦୁଇପଦ

'ସତୀଚନ୍ଦ୍ରିକା' ପ୍ରଭୃତିର ଲେଖକ ଆମ୍ଭମାନଙ୍କର ଅପରିଚିତ ନୁହନ୍ତି । 'ଅମର ଗୌରବ' ତାଙ୍କର ଅନ୍ୟ ଏକ ଅବଦାନ, ଯହିଁରେ ସେ ମେହେର ସାହିତ୍ୟସୁଲଭ ଭାଷାଶୈଳୀରେ ରାମାୟଣ ଚରିତର ଏକ ବିଶିଷ୍ଟ ଦିଗର ରୂପାୟିତ କରିଛନ୍ତି । ପୁରାତନ ଗାଥାର ଭିତ୍ତିଭୂମି ଉପରେ ନୂତନ ଆଭିମୁଖ୍ୟ ଦେଇ ସେ ଯେଉଁ ସୌଧ ନିର୍ମାଣ କରିଛନ୍ତି, ତାହା ବହୁ ପାଠକଙ୍କର ଆମୋଦଦାୟକ ହୋଇପାରେ । ବାଣୀ ସାଧକମାନଙ୍କୁ ଉତ୍ସାହିତ କରିବାର ପରିକଳ୍ପନା ମଧ୍ୟରେ ଏଭଳି କାବ୍ୟମାନଙ୍କର ପ୍ରକାଶନ ଆବଶ୍ୟକ ମନେ ହୁଏ ।

ଶ୍ରୀ ଗୌରୀ କୁମାର ବ୍ରହ୍ମା
ସେକ୍ରେଟାରୀ
ଓଡ଼ିଶା ସାହିତ୍ୟ ଏକାଡେମୀ ।

ଭୁବନେଶ୍ୱର
୧୫-୯ ୧୯୭୪

# ଉପକ୍ରମଣିକା

ସହୃଦୟ ପାଠକବୃନ୍ଦ! ଆମ୍ଭର ଅଧ୍ୟାତ୍ମବାଦୀ ଭାରତବର୍ଷରେ ପବିତ୍ର ରାମାୟଣ କଥାର ମନ୍ଦାକିନୀଧାରା ଜ୍ଞାନପର୍ବତ-ବାଲ୍ମୀକି ମହର୍ଷିଙ୍କର ମୁଖ-ବିବରରୁ ନିଃସୃତା ହୋଇ, ଅଗଣିତ ନଦୀ, ଶାଖାନଦୀ, ଉପନଦୀ ରୂପରେ ପ୍ରବାହିତ ହୋଇ ଭାରତୀୟ ସମାଜକୁ ଅପାର୍ଥିବ ଜ୍ଞାନ ଦାନ କରି, ମୋକ୍ଷ-ରତ୍ନାକରଙ୍କ ବିରାଟ ବିଗ୍ରହରେ ମିଳନଲାଭ କରିଅଛି। ଏପରି ବିଶ୍ୱ ବିଖ୍ୟାତ ରାମାୟଣ ମହାକାବ୍ୟ ବିଷୟରେ ମୋପରି ମୋହଜଡ଼ିତ ଜ୍ଞାନ-ବାମନ କିଛି କହିବା ବାତୁଳତାର ପରିଚୟ ବ୍ୟତୀତ ଅନ୍ୟ କିଛି ନୁହେଁ।

ପ୍ରକୃତିରାଜ୍ୟରେ ବିକଶିତ ଚମ୍ପକ, ଗୋଲାପ, ପଦ୍ମ, ମଲ୍ଲିକା-ପ୍ରଭୃତି କୁସୁମମାନଙ୍କର ସୁଭଗ ସୁବାସ ଗୌରବ ଜାଣି ସୁଦ୍ଧା ସୁବାସହୀନ ପଳାଶ ପାରିଭଦ୍ରାଦି ପୁଷ୍ପମାନେ ପ୍ରସ୍ଫୁଟିତ ହେଲା ପରି, ମହତ୍କୃତ ସତୀଚନ୍ଦ୍ରିକା କାବ୍ୟ ପ୍ରସୂନଟି ବିକାଶ ଲାଭ କରିଥିଲା। ମାଘକବି କହିଛନ୍ତି "କ୍ଷଣେ କ୍ଷଣେ ଯନ୍ନବତା ମୁପୈତି ତଦ୍ଦେବ ରୂପଂ ରମଣୀୟତାୟାଃ।" ଏହି ଉକ୍ତି ଅନୁସାରେ ମୋର ମନ 'ଅମର ଗୌରବ' କାବ୍ୟ ରଚନାରେ ଆଗ୍ରହୀ ହେଲା। ଏହା ବିଧି ନିର୍ଦ୍ଦେଶ ପରି ଜଣାଯାଏ।

ଦିନେ ଜଣେ ବନ୍ଧୁ ପ୍ରଶ୍ନ କଲେ "ସର୍ବଶାସ୍ତ୍ର ଲବ୍ଧ ପ୍ରତିଷ୍ଠ ରାବଣ ରାଜାଙ୍କର ସୀତାଙ୍କୁ ପଞ୍ଚବଟୀ ବନରୁ ନେଇ ଯିବାର କାରଣ କଣ ? ଯଦି କାମ ପ୍ରଲୋଭନରୁ ସୀତାଙ୍କୁ ନେଇଥାନ୍ତେ, ତେବେ ପଞ୍ଚବଟୀରୁ ନେଇ ନାରୀ ଗହଣରେ ଅଶୋକ ବନରେ ରଖିବାର ଉଦ୍ଦେଶ୍ୟ କଣ ? କେହି କେହି କହି ପାରନ୍ତି, 'ରାବଣ ରାଜାଙ୍କର ରାଜଭବନକୁ ଯିବାକୁ ସୀତାଙ୍କର ସମ୍ମତି ନ ଥିଲା। କିନ୍ତୁ ସୀତାଙ୍କୁ ପଞ୍ଚବଟୀରୁ ନେଇଯିବା ସମୟରେ ତାଙ୍କର ସମ୍ମତି ଥିଲା କି ? ଏ କଥା ମୂଳରେ ବିଶେଷ କିଛି ଗୂଢ଼ ରହସ୍ୟ ଥିଲା ପରି ଜଣାପଡୁଛି। ଆପଣ ଏହି ପ୍ରଶ୍ନର ଉତ୍ତର ଦେଇ ପାରିବେ ବୋଲି ମୋର ଧାରଣା। ସେ ମହାଶୟଙ୍କର ପ୍ରଶ୍ନଟି ମୋତେ ସଙ୍ଗେ ସଙ୍ଗେ ଚିନ୍ତା-ସମୁଦ୍ରରେ ଭସାଇ ଦେଲା। ଏହି କଥାର ଉତ୍ତର 'ପରେ ଦେବି' ବୋଲି କହି ମୁଁ କଳ୍ପନା ରାଜ୍ୟରେ ଭ୍ରମଣ କଲି। ରାବଣ ରାଜାର ବିମଳ ଯଶବର୍ଣ୍ଣିତ କେତୋଟି ଶ୍ଳୋକ ମୋର ସ୍ମୃତିପଥାରୂଢ଼ ହେଲା।

ମହାନାଟକରେ ଉଲ୍ଲେଖ ଅଛି :—

"ଜାନାମି ସୀତାଂ ଜନକ ପ୍ରସୂତାଂ
ଜାନାମି ରାମଂ ମଧୁସୂଦନଂଚ
ଜାନାମି ରାମସ୍ୟ ଶରେଣ ମୃତ୍ୟୁଂ
ତଥାପି ସୀତାଂ ନ ସମର୍ପୟାମି"

ପ୍ରୋକ୍ତ ଶ୍ଳୋକଟିରୁ ଜଣା ପଡୁଛି, ରାବଣର ସୀତାଙ୍କୁ ନେବା ଉଦ୍ୟମ ଅତି ମହତ୍, ଅସାଧୁ ଉଦ୍ୟମ ନୁହେଁ ।

ଅଷ୍ଟାଦଶ ଭାଷା ବାରବିଳାସିନୀ ଭୁଜଙ୍ଗ ସାନ୍ଧିବିଗ୍ରହିକ ମହାପାତ୍ର କବିରାଜ ବିଶ୍ୱନାଥ, ବିଶ୍ୱ ବିଖ୍ୟାତ ଅଳଙ୍କାର ଗ୍ରନ୍ଥ "ସାହିତ୍ୟ ଦର୍ପଣ"ର ସପ୍ତମ ପରିଚ୍ଛେଦସ୍ଥ ଦୋଷ ନିରୂପଣରେ ରାବଣ ରାଜାଙ୍କର ସମ୍ବନ୍ଧରେ ଲେଖିଥିବା ଶ୍ଳୋକଟି ଅନୁଧ୍ୟାନ କରାଯାଉ :—

ଆଜ୍ଞା ଶକ୍ରଶିଖାମଣି ପ୍ରଣୟିନୀ, ଶାସ୍ତ୍ରାଣି ଚକ୍ଷୁର୍ନବଂ
ଭକ୍ତିର୍ଭୂତପତୌ, ପିନାକିନପଦଂ ଲଙ୍କେତି ଦିବ୍ୟାପୁରୀ,
ଉତ୍ପତ୍ତିର୍ଦ୍ରୁହିଣାନ୍ୱୟେଚ ତଦହୋ ନେଦୃଗ୍ବରୋଲଭ୍ୟତେ
ସ୍ୟାଚ୍ଚେ ଦୋଷ ନ ରାବଣଂ କ୍ୱନୁ ପୁନଃ ସର୍ବତ୍ର ସର୍ବେଗୁଣାଃ ।

ଉକ୍ତ ଶ୍ଳୋକଟିରେ ସତୀଶିରୋମଣି ସୀତାଙ୍କର ସ୍ୱାମୀରୂପେ ପଣ୍ଡିତ ଶିରୋମଣି ରାବଣ ରାଜାଙ୍କୁ ବରଣ କରାଯିବା ସମ୍ବନ୍ଧରେ ରାଜର୍ଷି ଜନକଙ୍କୁ ସୂଚନା ଦିଆଯାଇଛି, କିନ୍ତୁ ସମସ୍ତ ଗୁଣ ବର୍ଣ୍ଣନା କରିବା ପରେ "ରାବଣ" ଏହି ନାମର ଯୌଗିକ ଅର୍ଥର ଦୋଷ ଦେଖାଇଅଛନ୍ତି । ସେ ଦୋଷକୁ ପ୍ରକୃତ ବିଚାର କଲେ ଦୋଷ ପରି ଜଣାପଡ଼ ନାହିଁ । 'ଜନାନ୍ ରାବୟତୀତି ରାବଣଃ' । ଏହି ପ୍ରକାର ଯୌଗିକ ଅର୍ଥ ହୋଇଅଛି । ଆମର ଅଧ୍ୟାତ୍ମବାଦୀ ଭାରତବର୍ଷରେ ଯୁଗେ ଯୁଗେ ଆର୍ଯ୍ୟ ସମାଜ ବେଦବିଧି ଅନୁସାରେ ସମସ୍ତ କାର୍ଯ୍ୟ ସମ୍ପାଦନ କରନ୍ତି । ଚିରଚରିତ ପନ୍ଥାନୁଯାୟୀ ନବଜାତ ଶିଶୁର ଏକବିଂଶ ଦିବସରେ ନାମକରଣ କରିବା ବିଧି ଅଛି । ଏଣୁ ବେଦମୁଖ ବ୍ରହ୍ମାଙ୍କର ପୁତ୍ର ବିଶ୍ରବା ଋଷି ନିଜ ପୁତ୍ରର ନାମକରଣ ପ୍ରୋକ୍ତ ପରମ୍ପରାନୁସାରେ ନିଶ୍ଚୟ କରିଥିବେ । ଏକବିଂଶ ଦିବସର ଶିଶୁ ଜନସମାଜକୁ କନ୍ଦାଇ ପାରିଥିଲା ବୋଲି ରାବଣ ନାମରେ ନାମିତ ହୋଇଅଛି । ଏହା ଚିନ୍ତାଶୀଳ ପାଠକ ସମାଜର ବିଚାର୍ଯ୍ୟ ।

ଏହିପରି ରାମାୟଣ ରାଜ୍ୟରେ ଭ୍ରମଣ କରି ବର୍ଣ୍ଣନା କବିଙ୍କର ବିଭିନ୍ନ ମତ ଦେଖି ସନ୍ଦେହ କୁହୁକ-କାନନର ପଥିକ ହେଲି । ଅନେକ ସ୍ଥଳରେ ଅସମ୍ଭବ କଳ୍ପନା ଦେଖିବାକୁ ପାଇଲି ।

ଯେଉଁ ପୂତମୂର୍ତ୍ତି ଭୂଯଶା ସୂର୍ଯ୍ୟବଂଶାବତଂସ ରଘୁ, ଅଜ ଓ ଦିଲୀପ ପ୍ରଭୃତି ରାଜାମାନଙ୍କର ବିମଳକୀର୍ତ୍ତି ପୁଷ୍ପିତା ଲତିକାସ୍ୱରୂପା ଭୁବନରେ ଶୋଭମାନା ହୋଇଛି, ସେହି ଅକଳଙ୍କ ବଂଶସମ୍ଭୂତ ବୀର ମୁକୁଟମଣି ନ୍ୟାୟନିଷ୍ଠ ଶ୍ରୀରାମଚନ୍ଦ୍ରଙ୍କର ଚରିତ ବର୍ଣ୍ଣନ ଅନେକ ସ୍ଥଳରେ ଉତ୍ତମ-ଅନୁତ୍ତମ ହୋଇଛି । ସେହିପରି ଲଙ୍କା ଅଧିପତି ରାବଣ କେଉଁଠି ନୀତିଜ୍ଞ ପଣ୍ଡିତ, କେଉଁଠି ଚରିତ୍ରହୀନ ଅସୁରର ସ୍ଥାନ ପାଇଛନ୍ତି । ଏଣୁ ବାଣୀ-ଦେବୀଙ୍କର ମନୋହର 'କଳ୍ପନା ଉଦ୍ୟାନରେ ଭ୍ରମଣ କଲି । ଉଦ୍ୟାନରୁ ପୁଷ୍ପଚୟନ କଲାବେଳେ ଯେଉଁ ନବ ପ୍ରସ୍ଫୁଟିତ ସୁରଙ୍ଗ ସୁବାସ କୁସୁମଟି ନୟନ ଗୋଚର ହୋଇ ଚିତ୍ତାକର୍ଷଣ କରେ ସେହି ଫୁଲଟି ନ ତୋଳି ରହି ହୁଏ ନାହିଁ । ବିଜ୍ଞ ପାଠକ ସମାଜକୁ ମୋର ଅନୁରୋଧ, ଉକ୍ତ କାବ୍ୟ-କୁସୁମମାଳ ନିର୍ମାଣ ବେଳେ ଯଦି ରୁଚିହୀନ ପୁଷ୍ପ ସଂଯୋଗ ହୋଇ ଯାଇଥିବ, କ୍ଷମାଦେବ ।

ବିଷୟଟିକୁ ଚିନ୍ତା କରୁ କରୁ ଉକ୍ତ କାବ୍ୟଟି ସପ୍ତଦଶ ସର୍ଗବିଶିଷ୍ଟ ହୋଇଗଲା । କାବ୍ୟର ପ୍ରଥମ ନାମକରଣ 'ଆଦର୍ଶ ରାଜଚରିତ ।' କାବ୍ୟର ନାୟକ ନାୟିକା ରାବଣ, ମନ୍ଦୋଦରୀ, ପଞ୍ଚଦଶ ସର୍ଗ ଲେଖିଥିବା ସମୟରେ ଜନୈକ ଛାତ୍ରାନ୍ତର୍ଗତ ବିଚକ୍ଷଣ ଚିନ୍ତାଶୀଳ ପଣ୍ଡିତ ଶ୍ରୀଯୁକ୍ତ ଚିନ୍ତାମଣି ମିଶ୍ର ଶର୍ମା ଓ ସୁସାହିତ୍ୟିକ ଶ୍ରୀଯୁକ୍ତ ଦର୍ପ ନାରାୟଣ ଜେନାଙ୍କ ନିକଟରେ ଉକ୍ତ ପାଣ୍ଡୁଲିପିଟି ପାଠ କରି ଶୁଣାଇବାରୁ ପ୍ରୀତ ହେଲେ ଏବଂ କହିଲେ ଭକ୍ତବର ରାବଣ ଜଗଜ୍ଜନନୀ ସୀତାଙ୍କର କରାକର୍ଷଣ କରି ରଥରେ ବସାଇବା କଥାର ପରି-ବର୍ତ୍ତନ ହେଲେ ଭଲ ହୁଅନ୍ତା । ଏକଥା ଶୁଣି ତାର ପରିବର୍ତ୍ତନ କରାଗଲା ।

ତା' ପରେ କଟକ କଲେଜର ଅଧ୍ୟାପକ ଶ୍ରୀଯୁକ୍ତ 'ଗୌରିକୁମାର ବ୍ରହ୍ମା ଉକ୍ତ କାବ୍ୟଟିର ପାଣ୍ଡୁଲିପି ପୂର୍ଣ୍ଣ ପାଠ କରି ଅତ୍ୟନ୍ତ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ ମୋର ହତୋତ୍ସାହ ମରୁଭୂମିରେ ଜଳସେଚନ କରି କହିଲେ, କାବ୍ୟଟିର ନାମ ଆଦର୍ଶ ରାଜ ଚରିତ ନ ହୋଇ 'ଅମର ଗୌରବ' ହେଲେ ବୋଧହୁଏ ଭଲ ହେବ, କାରଣ ସ୍ୱଦେଶ ବତ୍ସଳ ରାବଣ

ରାଜାଙ୍କର ସଙ୍କଳ୍ପ, ଲଙ୍କାରେ ଲକ୍ଷ୍ମୀନାରାୟଣଙ୍କ ପଦ ପଡ଼ିଲେ ସେ ସ୍ୱରାଜ୍ୟ ସ୍ୱର୍ଗପଦ ବା ଅମର ଗୌରବ ଲାଭ କରିବ । ବ୍ରହ୍ମା ମହାଶୟଙ୍କଠାରୁ ଏକଥା ଶୁଣିଲା ମାତ୍ରେ କାବ୍ୟର ନାମକରଣ 'ଅମର ଗୌରବ' କରିଗଲି ।

ତତ୍ପୂର୍ବରୁ ରେଭେନ୍ସା କଲେଜର ଅଧ୍ୟାପକ 'ମଞ୍ଜୁଳମଣି ଅଳକା' କାବ୍ୟର କବି ଶ୍ରୀଯୁକ୍ତ ଜୟକୃଷ୍ଣ ମିଶ୍ର ମହାଶୟଙ୍କର କାବ୍ୟ ପର୍ଣ୍ଣ କରିବାକୁ ସେହିଁ ଅକୃତ୍ରିମ ପ୍ରେରଣା, ତାହା ମୋତେ ଏହି ପଥରେ ଅଗ୍ରଗାମୀ କରାଇ ନେଇଛି ।

ପରିଶେଷରେ ପାଠକପାଠିକାମାନଙ୍କୁ ମୋର ବିନୀତ ଅନୁରୋଧ, ଉକ୍ତ କାବ୍ୟଟିକୁ ରାମାୟଣ ଦୃଷ୍ଟିରେ ନ ଦେଖି 'ଅମର ଗୌରବ' ଦୃଷ୍ଟିରେ ପାଠକରି ମୋର ଶ୍ରମ ଚରିତାର୍ଥ କରିବା ହେବେ । ଇତି ।

ଶ୍ରୀପଞ୍ଚମୀ<br>୧୯୫୦ } ଶ୍ରୀ ମାଧବ ଚନ୍ଦ୍ର ମିଶ୍ର ଶର୍ମା<br>କଟକ ।



# ଅମର ଗୌରବ

---

## ପ୍ରଥମ ସର୍ଗ

### ବନ୍ଦ—ମଙ୍ଗଳ

ଭାରତି ବିଶଦ ଯଶ ନଗେନ୍ଦ୍ର ନନ୍ଦିନୀ!
ସର୍ବଶକ୍ତି ପ୍ରଦାୟିନୀ! ସୁମନ ବନ୍ଦିନୀ! ୧ ।

କାମନା କଳ୍ପଲତିକେ ଅଭୟ ବରଦେ!
ଶରଣ ତବ ସମ୍ଫୁଲ୍ଲ କୋକନଦ ପଦେ । ୨ ।

ଅମର ଗୌରବ କାବ୍ୟ ତଟିନୀ ପଥରେ,
ପ୍ରବେଶାଅ, ଅନ୍ନପୂର୍ଣ୍ଣେ ମା! ସମାପ୍ତି ସାଗରେ । ୩ ।

ଉଚିତ ସୁଗମ ପଥେ ମୋତେ ଘେନି ଯାଅ
ଅନୁଚିତ ଭ୍ରମ-ଚକ୍ର ମଧ୍ୟେ ନ ଭ୍ରମାଅ । ୪ ।

ବିସ୍ତୃତ ନ କର ପଦ ମୋ ଗନ୍ତବ୍ୟ ପଥ,
କେ କହ ପାରନ୍ତି ଚରାଚରରୁ ବିପଥ । ୫ ।

ଚିନ୍ତାଶୀଳ ବିଚକ୍ଷଣ ପଣ୍ଡିତ-ମଣ୍ଡଳ,
କରିବେ ସଂଶୟ-ହର ନାମ ସାର୍ଥକର । ୬ ।

ଅବନୀ ମଣ୍ଡଳ ବୀର ନିକର ଭୂଷଣ,
ନିଗମ-କମଳ-ବନ ନବୀନ ପୂଷଣ । ୭ ।

ବିଶ୍ରବାନନ୍ଦନ ଜିଣେ ରତ୍ନ ସିଂହାସନେ,
ସହରଷେ ବସି, ବସ୍ତ୍ର, ସୁମନ ଭୂଷଣେ । ୮ ।

କେହ୍ନ ବିଚକ୍ଷଣ ବନ୍ଦୀ ଅନୁଦାତ୍ତ ତାନେ,
ମୋହିଲ ସଭା ମଣ୍ଡଳ ରାଜଯଶ ଗାନେ । ୯ ।

ହେ ଦେବ ! ନିଗମ ସିନ୍ଧୁ-ମନ୍ଥନ ମନ୍ଦର,
ସକଳ ଜଗତ ବୀରବୃନ୍ଦ ପୁରନ୍ଦର । ୧୦ ।

ବଂଶ ପାରିବାରେ ତୁମ୍ଭେ କଳ୍ପତରୁ ବର,
ଧନ କି ବର୍ଣ୍ଣିବ ଯା', ପରଶା ରତ୍ନାକର । ୧୧ ।

ପୁଷ୍ପକ ବିମାନ ଯାର ଭ୍ରମୁଛି ଗଗନେ,
ଯଶ ଲବ୍ଧ ହୋଇବାରୁ ବିଜ୍ଞାନେ, ଦର୍ଶନେ । ୧୨ ।

ନାହିଁ କଳଯନ୍ତ୍ର, ଜଳ, ଅନଳ ପବନ,
ଅବିଘ୍ନେ ଆଦେଶ ମାନେ କରଇ ଗମନ । ୧୩ ।

ଯଜ୍ଞ ପରାୟଣ ବିପ୍ରକୁଳ ଚୂଡ଼ାମଣି,
ବିପ୍ର ଭକ୍ତ ମୃତ୍ୟୁଞ୍ଜୟ ଗୁଣ ରତ୍ନଖଣି । ୧୪ ।

ସୁଜଳା ସୁଫଳା ନାନା ଶସ୍ୟ ପରିମଳା,
ଧନ ଧାନ୍ୟେ ପୂର୍ଣ୍ଣା ଯେଉଁ ନଗରୀକମଳା । ୧୫ ।

ପୂଗ ନାରିକେଳ ଆଦି ଫଳ ଦାନ କରି,
ଧାତ୍ରୀ ପରି ପାଳେ ପ୍ରାଣେ ବିମଳା ନଗରୀ । ୧୬ ।

ବୃନ୍ଦାରକ ବୃନ୍ଦ ହୋଇ ଯା' ସେବାରେ ବଶ,
ଗାଉଛନ୍ତି ତୋଷେ ଶୂର-ଶଙ୍କା-ଲଙ୍କା ଯଶ । ୧୭ ।

ରାଜ ରାଜେଶ୍ୱରୀ ପଦେ ଦୀନାର୍ତ୍ତିନାଶିନୀ—,
ଦୁର୍ଗେ ହୋଇଛନ୍ତି ଯହିଁ ବିପଦବାରିଣୀ । ୧୮ ।

ବିଶ୍ୱେ ଅବଶ କର୍ତ୍ତବ୍ୟ ବ୍ରତ-ନବଗ୍ରହ,
କରୁଣା କଟାକ୍ଷେ ଜଗିଛନ୍ତି ଯା ବିଗ୍ରହ । ୧୯ ।

ମନୋରମା ମନ୍ଦୋଦରୀ ପ୍ରଫୁଲ୍ଲ ଅଧର—
ସୁଧାପାନେ ନିରଳସ ମତ୍ତ ମଧୁକର । ୨୦ ।

ସଦାଶିବପ୍ରିୟ ଭକ୍ତ ସଦା ଶିବେ ରହି,
ରାଜ-ଶାସ୍ତ୍ର ଶାସ୍ତ୍ରେ ଯଶଲବ୍ଧ ନାମ ବହି । ୨୧ ।

ସଙ୍ଗୀତ ସାହିତ୍ୟ ପ୍ରିୟ କବି ଶିରୋମଣି,
ପରଜା ପୁଞ୍ଜ ରଞ୍ଜନ ଗୁଣ-ରତ୍ନ ଖଣି । ୨୨ ।

କୃଷି, ଶିଳ୍ପ ବିଶାରଦ ସର୍ବେଁ ସର୍ବ ଜନ,
ରଣପଟୁ ନବଶସ୍ତ୍ର ନିର୍ମାଣ ବନ୍ଦନ । ୨୩ ।

ସର୍ବତ୍ରହେ ବାସ କରେ ସର୍ବେଁ ଶାନ୍ତି, ଭୋଗ,
ଅପଦ୍ମନ ସ୍ପର୍ଶ କରେ ନାହିଁ କେବେ ରୋଗ । ୨୪ ।

ଯେଉଁ ରାଜ୍ୟରେ ପରଶା ରତନ ଆକର,
କନକପୁର କହିବା ନୁହେ ଅସୁନ୍ଦର । ୨୫ ।

କେ ବିଜ୍ଞାନୀ ବିଶ୍ୱଧ୍ୱଂସ କ୍ଷମ ନବ ବାଣ,—
ନିର୍ମାଣି, ଲଭ କରନ୍ତି ରାଜ ସନମାନ । ୨୬ ।

ଉପାଧି, ଅର୍ଥରୁ ଲଭି ଗ୍ରନ୍ଥ ପୁରସ୍କାର;
କରନ୍ତି ନିତ୍ୟ, ନୂତନ ଶସ୍ତ୍ର ଆବିଷ୍କାର । ୨୭ ।

ଅଭେଦ୍ୟ ବିକ୍ରମ ଶ୍ରୀମ ବିଶାଳ ଦୁର୍ଗଚୟ,
ବ୍ୟକ୍ତ କରଅଛି ଯା'ର ତ୍ରିଭୁବନ ଜୟ । ୨୮ ।

ସାମ, ଦାନ, ଦଣ୍ଡ, ଭେଦ, ନୀତି ବିଚକ୍ଷଣ,
ଶିକ୍ଷା ଜଗତରେ ଯେଣୁ ଆଦର୍ଶ ଆପଣ । ୨୯ ।

ନାହିଁ ବିଶ୍ୱେ କେଉଁ ଦେଶ ଲଙ୍କା ଉପଲକ୍ଷ,
କେତେ ଗୁଣେ ହୋଇପାରେ ସ୍ୱର୍ଗ ସମକକ୍ଷ । ୩୦ ।

ଶୁଣି ବନ୍ଦୀ ମୁଖୁ ବୀର ଲଙ୍କେଶ୍ୱର ଯଶ,
ଦେବର୍ଷିଙ୍କୁ ଚାହିଁ ନାରଦ ହେଲେ ହସ ହସ । ୩୧ ।

ନାରଦଙ୍କ ଉପହାସ ମନେ କରି ସ୍ଥିର,
ବୋଇଲେ ଶୁକ-ସାରଣ ସଚିବ ମିହିର । ୩୨ ।

ପ୍ରକାଶନ୍ତୁ ହେ ମହର୍ଷେ! ହାସର କାରଣ,
ଜାଣନ୍ତି ତ ହସରେ ତା, ଅଶୋଭା ଲକ୍ଷଣ । ୩୩ ।

କୁତୂହଳ କଥା ବିନା ଉପୁଜିଲେ ହାସ,
ନାନାବିଧ ଭାବେ ଦିଏ ଶୋଭା ହୃଦେ ତ୍ରାସ । ୩୪ ।

ହାସ; ଭାଷ, ପରିଧାନ—ମାତ୍ର ଅନୁଚିତ,
ହୋଇଲ ବୋଲି ବିବେକୀ ହୁଅନ୍ତି ଚକିତ । ୩୫ ।

ନାରଦ ବୋଇଲେ ବନ୍ଦୀ ମୁଖୁଁ ରାଜ ଯଶ,
ଶୁଣି ଅନ୍ତରେ ମୋହର ଜନ୍ମିଲା ହରଷ । ୩୬ ।

ଉଚିତ ନୁହଇ ଅନୁଚିତ ବିଶେଷଣ,
ଅଲଙ୍କାର ଶାସ୍ତ୍ରେ ଯାହା ପ୍ରଧାନ ଦୂଷଣ । ୩୭ ।

ଦେଶର ହିତ ସାଧକ ସମ୍ମୁଖରେ ଯଶ,
ଗାଇଲେ ତା' ଚିତ୍ତେ ଚିତ୍ତେ ଆସେ ଅପଯଶ । ୩୮ ।

ଅଯଥା ପ୍ରଶଂସା ନ କରନ୍ତି ବିଚକ୍ଷଣ,
ଅଧଃପତନର ତାହା ପ୍ରଥମ କାରଣ । ୩୯ ।

କେତେ ଅସଙ୍ଗତ କଥା ଲଙ୍କା ସ୍ୱର୍ଣ୍ଣପୁର,
ଶୁଣିଲବେଳୁ ମୋ ଦେହ ଉଠୁଅଛି ଥର । ୪୦ ।

ଯହିଁ ପଡ଼ିନାହିଁ ଲକ୍ଷ୍ମୀ ନାରାୟଣ ପଦ,
ସେପୁର କି ଲଭି ପାରେ କେବେ ସ୍ୱର୍ଗପଦ ? ୪୧ ।

ମନ୍ତ୍ରୀ ବୋଇଲେ ହେ ତପୀବୃନ୍ଦ ବିଚକ୍ଷଣ,
କିପରି ହୋଇବ ଏହି ଅଭାବ ପୂରଣ ? ୪୨ ।

ସର୍ବଜ୍ଞ ପଣ୍ଡିତ ଥରେ କରନ୍ତୁ କରୁଣା,
ସିଂହଳ ଦ୍ୱୀପ ନ ହେଉ ଏତିକରେ ଊଣା । ୪୩ ।

ଦେବର୍ଷି ବୋଇଲେ ସେ ଯେ ଅତି ବଡ଼ କଥା,
କି ଉପାୟ କହିବି ମୁଁ ଖଟୁନାହିଁ ମଥା । ୪୪ ।

ଗୋଲକବିହାରୀ ହରି ନିତ୍ୟ ନିରଞ୍ଜନ,
ଭକତ ବତ୍ସଲ ପ୍ରଭୁ ଦୀନାର୍ତ୍ତିନାଶନ । ୪୫ ।

ନରଦେହେ ଭବେ ହୋଇଛନ୍ତି ଅବତାର,
ଧରଣୀ ଦୁଃସହ ଭାର କରିବେ ସଂହାର । ୪୬ ।

ହୋଇଛନ୍ତି ବିଶ୍ୱପୂଜ୍ୟ ଭାରତେ ସମ୍ଭୂତ,
ଅଯୋଧ୍ୟା ନଗରେ ଦଶରଥ ନୃପ ସୁତ । ୪୭ ।

ସୀତା ନାମେ ଲକ୍ଷ୍ମୀ, ଚର ଅଚର ପାଳିନୀ,
ହୋଇଅଛନ୍ତି ରାଜର୍ଷି ଜନକ-ନନ୍ଦିନୀ । ୪୮ ।

ରୁଦ୍ର ଶ୍ରୀମ ଶରାସନ ଗର୍ବ ବିମର୍ଦ୍ଦନ,
ଫଳେ, ହୋଇଅଛି ରାମ ସୀତାଙ୍କ ମିଳନ ।୪୯।

ବିଶ୍ୱାମିତ୍ର ଅନୁରୋଧେ ତାଡ଼କା ମର୍ଦ୍ଦନ,
କରିଛନ୍ତି ପର୍ଶୁରାମ ଗର୍ବେ ଦଳନ ।୫୦।

ଦୟାମୟ ପ୍ରଭୁ ରାମ ରାଜୀବଲୋଚନ,
ଦୁର୍ଜ୍ଜନ ଦଳନ ଦୀନ ସଙ୍କଟ ମୋଚନ ।୫୧।

ସତ୍ୟସିନ୍ଧୁ ପିତୃସତ୍ୟ କରିବେ ପାଳନ,
ଗହନ କାନନେ ଭ୍ରମି ତେଜି ସିଂହାସନ ।୫୨।

ସୀତା ସୌମିତ୍ରୀ ସଙ୍ଗେ କୋଦଣ୍ଡଧାରଣ,
କରୁଛନ୍ତି, ଚିତ୍ରକୂଟ ସମୀପେ ଭ୍ରମଣ ।୫୩।

ଭକ୍ତ ବତ୍ସଳଙ୍କୁ କରି ଭକ୍ତି ଡୋରେ ବଶ,
ଆଣି ପାରିଲେ ହୋଇବ ଏ ପୁର ହିଦଶ ।୫୪।

ଗୁରୁଶ୍ୱାସ ମୁଖ୍ୟ ବୀର ବିଶ୍ରବାନନ୍ଦନ,
ବୋଇଲେ ଦେବଙ୍କୁ ଶୁଣ ମୋର ନିବେଦନ ।୫୫।

ଅସ୍ତାଚଳ ମଣ୍ଡିଲେଣି ଛବର ଦିନେଶ,
ଭବନେ ଯିବାକୁ ମୋତେ ଦିଅନ୍ତୁ ଆଦେଶ ।୫୬।

ବୃଦ୍ଧ ଆଜ୍ଞା ପାଇ ରାଜା ଚଳିଲେ ଭବନେ,
ସନ୍ଧ୍ୟା ତର୍ପଣେ ମଜ୍ଜିଲେ ଦେବ ବନ୍ଦିଗଣେ ।୫୭।

ଅଭୟା ଅଭୟ ପଦେ କରି ନମସ୍କାର,
ଶ୍ରୀ ମାଧବଚନ୍ଦ୍ର ମିଶ୍ର କରଇ ବିସ୍ତାର ।୫୮।



# ଦ୍ୱିତୀୟ ସର୍ଗ

**ସପ—ବଙ୍ଗବାଣୀ**

ସତୀ ପତିପ୍ରାଣା ଭୁବନ ସୁନ୍ଦରୀ,
ଗୃହମୟୀ ଲଙ୍କାପୁରୀ ପୁରନ୍ଦରୀ । ୧ ।
ମନ୍ଦୋଦରୀ, ସର୍ବ ସୌଭାଗ୍ୟମଣ୍ଡିନୀ,
ଲଙ୍କେଶ୍ୱର ଅଙ୍କ ସର-ପଙ୍କଜିନୀ । ୨ ।
ବଲ୍ଲେକ ଜୀବେଶ ପ୍ରଫୁଲ୍ଲ ସସ୍ମିତ-
ବଦନେ ବିଷାଦ, କାଳିମା ଜଡ଼ିତ । ୩ ।
ପଦ୍ମରେ ପ୍ରଣମି ଲଳିତ କଳିତ
ବଚନ ରଚିଲେ ଏ କି ଆଚମ୍ବିତ । ୪ ।
ଜାଣି ବା ନ ଜାଣି କରିଛି କି ଦୋଷ
ଦାସୀ ପ୍ରତି ନାଥ ! ବହୁଛ କି ରୋଷ ? ୫ ।
ଶତ ଶତ ଦୋଷ କ୍ଷମିବାର ପାଇଁ,
କେତେ କ୍ଷମା ଭିକ୍ଷା ଦାସୀ କର ନାହିଁ । ୬ ।
ପ୍ରଭୁ ହେ ତୁମ୍ଭର ଶ୍ରୀପଦ ସେବକୀ
ହୃଦୟର କେଉଁ କଥା ନ ଜାଣ କି ? ୭ ।
ହସି ଭାଷି ଦୁଃଖ କରନ୍ତୁ ଅନ୍ତର,
ତବ ଦୁଃଖେ ଦଗ୍ଧ ହେଉଛି ଅନ୍ତର । ୮ ।
ଶୁଣି ବାମା ବୀଣାଜିଣା ମୃଦୁ ବାଣୀ
ମହୀଶ ଭାଷିଲେ ଗଣ୍ଡେ ମଣ୍ଡି ପାଣି । ୯ ।
ଶିବ ଶକ୍ତି ବଳେ ହୋଇଲି ନିର୍ଭୟ,
ବାହୁବଳେ କଲି ତ୍ରିଭୁବନ ଜୟ । ୧୦ ।
ବେଦ, ବ୍ୟାକରଣ, ଜ୍ୟୋତିଷ, ବେଦାନ୍ତ,
ବିଜ୍ଞାନ, ଦର୍ଶନ କରିଲି ସିଦ୍ଧାନ୍ତ । ୧୧ ।

ସେବାରେ ମନାଇ ଦେବ ଗ୍ରହଚୟ,
ତାଙ୍କ ବଳେ ହେଲ ଭୁବନ ଦୁର୍ଜୟ । ୧୨ ।

ଆଗମ-ନିଗମ ଦକ୍ଷ, ପୂଜା ପାଠ-ବିଧି
ବହୁଶ୍ରମେ ସାଧି ଅରଜନ୍ତି ସିଦ୍ଧି । ୧୩ ।

ଭଗେ୍ୟ-ବପ୍ରକୂଳେ ହୋଇଅଛି ଜାତ,
କୁଳି ଯଶ ମଧ୍ୟ କରିଅଛି ଖ୍ୟାତ । ୧୪ ।

ସୌଭାଗ୍ୟ ଉନ୍ନତ ଶିଖରୀ ଶିଖରେ
ବାସ କଲେ ଶାନ୍ତି ନାହିଁ ନିକଟରେ । ୧୫ ।

ମୋ ପ୍ରପିତାମହ ହୋଇବାରୁ ବଧି,
ସ୍ୱବଂଶାବସ୍ଥେ ପ୍ରିୟେ ! ଅରଜନ୍ତି ସିଦ୍ଧି । ୧୬ ।

ଶୁଚିଶୀଳେ ! ମୋର ସକଳ ଗୌରବ,
ସୌରଭକୁ ଆଜ ମଣୁଛି ରୌରବ । ୧୭ ।

ଦୀର୍ଘଜୀବୀ ହୋଇ ନ ପୂରିଲା ଆଶା,
ଶତବାର ଧିକ ପ୍ରାଣୀର ଦୁରାଶା । ୧୮ ।

ମୋହ ଦ୍ୱାର ଯାହା ହୋଇନାହିଁ ଶେଷ,
କ୍ଷୀଣାୟୁ ପ୍ରାଣୀ ତା' ଲଭିବେ କି ଲେଶ? ୧୯ ।

ଅବିରତ ସନ୍ତାପ ବେନୁ ବଳହୀନ
ପ୍ରାଣୀଙ୍କର ପ୍ରିୟେ ! ଜନ ଗାତ୍ର କ୍ଷୀଣ । ୨୦ ।

ସେ କାହିଁ ପାଇବେ ଶାନ୍ତିର ଦର୍ଶନ ;
ଯଶ ଲବ୍ଧ ଆଶା ପ୍ରାଣ ଅକାରଣ । ୨୧ ।

ଜାଣ ତ ମୋହର ଅନ୍ତର ସରସ,
ନାରକେଳ ପରି ବାହାର କର୍କଶ । ୨୨ ।

ଦଶ ମହାବିଦ୍ୟା ସିଦ୍ଧି ଲଭ କରି ।
କେତେ କଷ୍ଟ ପାଇ ତୋଷିଲି ଶଙ୍କରୀ । ୨୩ ।

ଦଶଶିର ବଂଶ ଭକ୍ତ ଯାହାବଳେ
ଲଭିକରେ ଯେତେବେଳେ ଇଚ୍ଛା କଲେ । ୨୪ ।

ଆନ ଦେବାଦେବୀ ମନାଇବା ପାଇଁ,
ଜାଣିଛ ତ କେତେକାଳ ଯାଇ ନାହିଁ । ୨୫ ।

ବର୍ତ୍ତମାନ ସଖି ! ଲକ୍ଷ୍ମୀ ନାରାୟଣ,
ନ କରିବେ ଯଦି ଲଙ୍କାରେ ଭ୍ରମଣ । ୨୬ ।

ନାରଦ ମହର୍ଷି ବାଣୀ ଶତାନଳ,
ଦହିବ ମୋହର ବୁଦ୍ଧି ବିଦ୍ୟା ବଳ । ୨୭ ।

ସ୍ୱର୍ଗୀୟ ସୌଭାଗ୍ୟ ବଳପୁ ସମ୍ଭୂତ,
ହୋଇଛନ୍ତି ଯେଉଁ ବୀର ଶ୍ରେଷ୍ଠ ସୁତ । ୨୮ ।

କରିବେ ସମୟେ ଦେଶେ ଅତ୍ୟାଚାର,
ହତାହତ କିନ୍ତୁ ନ କରି ବିଚାର । ୨୯ ।

[illegible] ଶ୍ରମଫଳେ ଯେ ବଡ ହୋଇଛନ୍ତି,
ସବୁ ଅନୁଭବ ସେ କରି ପାରନ୍ତି । ୩୦ ।

ସେ କାହିଁ ଜାଣିବେ କାହା ମନ କଥା
ଦୁଃଖୀ ରଙ୍କୀଙ୍କର କାଟିଦେବେ ମଥା । ୩୧ ।

ଶୁଣ ଚନ୍ଦ୍ରାନନେ ! କରୁଛି ମୁଁ ଥୟ,
ଯେପରି ଘୋଷିବ ବିଶ୍ୱ ଲଙ୍କା ଜୟ । ୩୨ ।

ମାନବ ରୂପରେ ଲକ୍ଷ୍ମୀନାରାୟଣ,
କରୁଛନ୍ତି ଚିତ୍ରକୂଟରେ ଭ୍ରମଣ । ୩୩ ।

କଟିଲ କଉଶଳେ ପୁରେ ଅଣାଇବା
କାୟମନୋବାକ୍ୟ ଅର୍ପି ପୂଜିବା । ୩୪ ।

ନ ଆସିବେ ଯଦି ଏଥି ଦୟାମୟ,
ଆରମ୍ଭିବ ତାଙ୍କ ସହିତ ବିଗ୍ରହ । ୩୫ ।

ମାନବରୂପରେ ଜନମ ତାଙ୍କର,
ମନୋଭବ କାହିଁ ବୁଝିବେ ଆମର । ୩୬ ।

ଶତ୍ରୁଭାବ ଧରି ଆରମ୍ଭିଲେ ରଣ,
ବନ୍ଧୁ କରେ ପ୍ରିୟେ ! ହାରିବା ଜୀବନ । ୩୭ ।

ସୌଭାଗ୍ୟ ସଉଧେ କନକ କଳସ,
ହୋଇବ ଆମ୍ଭର କହିବେ ବିଦଶ । ୩୮ ।
ଅଳୀକେ ଅଙ୍କନେ ରଟିବେ ଦୁର୍ନାମ,
ମଣିବା ତାହାହିଁ ଆମ୍ଭର ସୁନାମ । ୩୯ ।
କେହି ଜ୍ଞାନୀ, କବି, ବିବେକୀ ଶେଖର,
ବୁଝିବେ ନିଶ୍ଚୟ ଅନ୍ତର ଆମ୍ଭର । ୪୦ ।
ଦଶ ଜଣ ଜ୍ଞାନୀ ଗାଇବେ ଯା ଯଶ,
କେ ମଣୁଚିରେ କୋଟି ମୂର୍ଖ ଅପଯଶ । ୪୧ ।
ନ ଚିନ୍ତିଲେ ମୋତେ ରାଜୀବଲୋଚନ,
ଅନ୍ତେ ମେ ଜଣାଇ ଦେବି ମୋର ମନ । ୪୨ ।
ହେଲା ଦ୍ୱିତ ବ୍ରତ ଲକ୍ଷ୍ମୀନାରାୟଣ,
କରାଇବି ଆଣି ଲଙ୍କାରେ ଭ୍ରମଣ । ୪୩ ।
ପଡ଼ିଲେ ମୋ ପୁରେ ସେ ପାବନ ପଦ,
ମଣିବି ଲଭିବି ଆଖଣ୍ଡଳ ପଦ । ୪୪ ।
ଭକ୍ତି ଚକେ ଦେଖ ଏହି ସୀତାରାମ,
ପୂର୍ଣ୍ଣ କରି ଦେବେ ଆମ୍ଭ ମନସ୍କାମ । ୪୫ ।
କରଯୋଡ଼ି ପ୍ରିୟେ ! କର ନିବେଦନ,
ନିନ୍ଦା ନେବେ ଗୃହଁ ରାଜୀବଲୋଚନ । ୪୬ ।
ଜୟ ଜୟ ରାମ ରାଜୀବଲୋଚନ,
ଜୟ ପର୍ଶୁରାମ ଗର୍ବ ବିମର୍ଦ୍ଦନ । ୪୭ ।
ଜୟ ସୀତାପତି କୋଦଣ୍ଡଧାରଣ,
ଲକ୍ଷ୍ମଣ ଅଗ୍ରଜ ମାନ ଉଦ୍ଧାରଣ । ୪୮ ।
ଶ୍ୟାମ ଦୂର୍ବାଦଳ ବରନ ସୁନ୍ଦର,
ପତିତପାବନ ବୀର ପୁରନ୍ଦର । ୪୯ ।
ଜୟ ରଘୁକୁଳ ସମୁଜ୍ଜ୍ୱଳ ରବି,
ପ୍ରଭୁ ! ଅବନୀତ-ଗର୍ବଗୋତ୍ର-ପବି । ୫୦ ।

ଗଜଦମଣ୍ଡାର ସ୍ତବପାଠ ଶେଷ,
ହୋଇ ନାହିଁ, ନିଶା ହୋଇଗଲା ଶେଷ । ୪୧ ।
ଦେବାଳୟୁ ଭେରୀ ମାର୍ଦ୍ଦଳ ପଟହ,
ବାଦ୍ୟରାଜ ବାଜି ଶୁଭେ ଗହ ଗହ । ୪୨ ।
ଗାଜିଲେ ତା' ସଙ୍ଗେ ବାଜି ଅବ୍ଦରାଜି,
ସରେ ପ୍ରଫୁଲ୍ଲିତ ହେଲେ ଅବ୍ଜରାଜି । ୪୩ ।
ମଜ୍ଜିଲେ କମଳ କୋଳେ ଭୃଙ୍ଗମାନେ,
କୂଜିଲେ ବିହଙ୍ଗେ ସୁମୃଦୁଳ ତାନେ । ୪୪ ।
ପଢ଼ିଲେ ଅବନୀସୁରେ ବେଦମନ୍ତ୍ର,
ଝଡ଼ିଲେ ଶେଫାଳୀ କୁସୁମ ସବନ୍ତ୍ର । ୪୫ ।
ଗଡ଼ିଲେ ପ୍ରଭୁଙ୍କ ଆଗେ ଭକ୍ତ ଜନେ,
ଲଢ଼ିଲେ ହରଷେ ତାମ୍ରଚୂଡ଼ ଗଣେ । ୪୬ ।
ହସିଲ ପରାଚୀ ରବିଛବି ଧରି,
ଦିଶିଲା ଉଜ୍ଜ୍ୱଳ ବିମଳା ନଗରୀ । ୪୭ ।
ସ୍ନାନ ଦେବାର୍ଚ୍ଚନେ ବିଜେ ହେଲେ ରାଜା,
ବାଜିଲା ଆଗରେ ନାନାବିଧ ବାଜା । ୪୮ ।
ବନ୍ଦୀଗଣ ଆସି କଲେ ଯଶପାଠ,
ସଙ୍ଗୀତ ପ୍ରବୀଣା ନଟୀ କଲେ ନାଟ । ୪୯ ।
ମଣ୍ଡି ଅପଘନ କୁସୁମ ଚନ୍ଦନେ,
ବନ୍ଦେ ବରଣ ପଟ୍ଟ ଆଭରଣେ । ୫୦ ।
ତନ୍ତ୍ରମତେ ଚଣ୍ଡ-ପୂଜା କରି ଶେଷ,
ଚଣ୍ଡୀ ଭବନରୁ ଚଳିଲେ ଧୀରେଶ । ୫୧ ।
ବୈଶ୍ୱଦେବ ହୋମ ତର୍ପଣାଦି କର୍ମ,
କଲେ ବଙ୍କମଣି ଯଥା କୁଳ ଧର୍ମ । ୫୨ ।
ଭୋଜନାଦି କର୍ମ କରି ତୂର୍ଣ୍ଣ ଶେଷ,
ରାଜ ଆଭରଣେ ଚଳିଲେ ବୀରେଶ । ୫୩ ।

ଚତୁର ମୁକୁନ୍ଦ ସଚିବକୁ ଘେନି,
ମନ୍ତ୍ରଣା ଆଗାରେ ପ୍ରବେଶିଲେ ଯାଇ । ୭୪ ।

ବୋଇଲେ ତୁମ୍ଭେ ତ ବିବେକୀଶେଖର,
ଦୟା କରି ରଖ ସମ୍ମାନ ମୋହର । ୭୫ ।

କ୍ଷାତ୍ର-କୁଳୋଜ୍ଜ୍ୱଳ ପୂତ ରଘୁବଂଶ,
ହଂସ-ବଂଶେ ହୋଇଛନ୍ତି ଅବତଂସ । ୭୬ ।

ଧର୍ମ ପରାୟଣ ଦଶରଥ ନାମ,
ରାଜକୁଳେ ଏକମାତ୍ର ଗୁଣଧାମ । ୭୭ ।

ତାଙ୍କ ପୁତ୍ର ରାମ ରାଜୀବଲୋଚନ,
କମଳା-ବିଳାସ ଦୀନାର୍ତ୍ତ-ନାଶନ । ୭୮ ।

ପିତା ସତ୍ୟ ପାଳି ପଞ୍ଚବଟୀ ବନେ,
ରହିଛନ୍ତି ସୀତା ଲକ୍ଷ୍ମଣ ଗହନେ । ୭୯ ।

ଶୁଣିଛ ତ ଭାଙ୍ଗି ଶିବ ଶରାସନ,
ରଖିଲେ ରାଜର୍ଷି ଜନକଙ୍କ ପଣ । ୮୦ ।

କ୍ଷତ୍ର-କୁଳ ପଦ୍ମ କାନନ-ଶିଶିର,
ବୀର-ଯଶ-ଗର୍ବ-ତମିର-ମିହିର । ୮୧ ।

ପର୍ଶୁରାମ କଳା କରିଲେ ହରଣ,
କଳାବାନ ସେହି କୋଦଣ୍ଡ ଧାରଣ । ୮୨ ।

ନ ପଡ଼ିଲେ ଲଙ୍କା ପୁରେ ତାଙ୍କ ପଦ,
ବ୍ୟର୍ଥ ହେଉଛି ମୋ ସକଳ ସମ୍ପଦ । ୮୩ ।

କଳେ ବଳେ କଉଶଳେ ତାଙ୍କୁ ଆଣ,
ଯାଅ ବୀର ଶୀଘ୍ର ଅଛି ମୋର ପଣ । ୮୪ ।

କାଲି ସଭାରେ ତ କରିଛ ଶ୍ରବଣ,
ତ୍ରିକାଳଜ୍ଞ ଋଷି କଲେ ଯା କଥନ । ୮୫ ।

ସୀତା ରାମ ପଦ କରିଲେ ଦର୍ଶନ,
ସଫଳ ହୋଇବ ମୋହର ନୟନ ।୭୬।

ରାଜା ଆଜ୍ଞା ଲଭି ସଚିବ ଚଳିଲେ,
ସିନ୍ଧୁ ଲଙ୍ଘି ଚିତ୍ରକୂଟରେ ମିଳିଲେ ।୭୭।

ସୂତ ସହ ରଥ ରକ୍ଷିଣ ଗୋପନେ,
ଲେଉଟିଲେ ରାମଙ୍କୁ ବୁଲି ଘନ ବନେ ।୭୮।

ନଗେନ୍ଦ୍ର ନନ୍ଦିନୀ ଶ୍ରୀପଦ ପଲ୍ଲବ,
କୃପାରେଣୁ ଲଭି କହଇ ମାଧବ ।୭୯।

ଅଭୟା ଅଭୟ ଶ୍ରୀପଦ ରାଜୀବ,
ପଦ ଧ୍ୟାନ କରି ଯାଉ ତା'ର ଜୀବ ।୮୦।



# ତୃତୀୟ ସର୍ଗ

ସ୍ୱର—ସ୍ୱପ୍ନବେଶ

ଗହନ ବିଜନ ବନରେ
ଭ୍ରମେ ସଚିବ ଧୀର,
ଶ୍ରୀରାମଚନ୍ଦ୍ରଙ୍କ କୁଟୀର
କାହିଁ ନ କର ସ୍ଥିର । ୧ ।

ମୋହୁଛି ମାନସ କାନନ
ନାନା ସୁମନା ଧର,
ମନ୍ଦେ ମନ୍ଦେ ମୃଦୁ ସୁଗନ୍ଧ
ସମୀରଣ ସଞ୍ଚର । ୨ ।

ନବ କିଶଳୟ ବସନେ
ଶୋଭେ ବନୀ ବନିତା,
ସୁକୋମଳମୟୀ ବଲ୍ଲରୀ
ନାନା ପୁଷ୍ପେ ଭୂଷିତା । ୩ ।

ବିହଙ୍ଗ ମୃଦୁଲ କାକଳୀ
ମୋହେ ବନ ବସୁଧା,
ଢାଳୁଛି ପଥିକ ଶ୍ରବଣେ
ଅବା ସ୍ୱର୍ଗୀୟ ସୁଧା । ୪ ।

ଠେକି କେକୀ ରମ୍ୟ କଳାପ
କରୁଛନ୍ତି ନର୍ତ୍ତନ,
ଗଣବଣ ଏଣୀ ଲୋକନେ
ମୋହେ ନାଅନ୍ତି ମନ । ୫ ।

ଭ୍ରମି ଭ୍ରମି ଘନ ବନରେ
ଚିତ୍ରକୂଟ ଭୂଧର—
ସମୀପେ, ପ୍ରବେଶ ହୋଇଲେ
ମନ୍ତ୍ରୀକୁଳ ଶେଖର । ୬ ।

ଶୈଳକୁ ଅନାବିଲ ନିର୍ଝର
ଝରି ବନ ମଣ୍ଡଳେ,
ବହୁ କଳ କଳ୍ଲ ଶବଦେ
ସର୍ବ ସନ୍ତାପ ହରେ । ୭ ।

ଦେଖିଲେ ସେଠାରେ ଅନନ୍ତ
ଦୂରେ ଏକ କୁଟୀର,
ସୁଷମା ବଢାନ୍ତି ତା ପାଶେ
ଫୁଟି କେତେ କୁସୁମ । ୮ ।

ବନ ପଶୁ ପକ୍ଷୀ ସବୁକେ
ତହିଁ ରଚନ୍ତି ଖେଳ,
ପରସ୍ପର ହିଂସା ନ ରଖି
ହୋଇ କୌତୁକେ ମେଳ । ୯ ।

ମୃଗାଜିନାସନେ ବସନ୍ତି
ସୀତା, ରାମ, ଲକ୍ଷ୍ମଣ,
ଭାବିଲେ ସେଠାରେ ବିପୁରେ
ଏହି ଶୋଭା ସଦନ । ୧୦ ।

ମର୍କତ, କନକ, ରଜତ
ଆଜି ବିଗ୍ରହ ଧରି
ଆସିଛନ୍ତି ଅବା ବନକୁ
ବିଶ୍ୱ ତାପ ନିହରି । ୧୧ ।

ଗଙ୍ଗା ଯମୁନାର ମଧ୍ୟରେ
ବିକେ ଅବା କମଳା
ସୁନୀଳ ବଣଦ ନୀରଦେ
ନିଶ୍ଚଳା କି ଚପଳା । ୧୨ ।

ଫୁଲ୍ଲ ଇନ୍ଦୀବର, କୁମୁଦ
କୁବଳୟ କମଳ

ବନ ସରସୀ କ କଣ୍ଠୁ
ଆଜି କା ଧରମଲା । ୧ ।

ପାରିଜାତ ଫୁଲ ସଙ୍ଗରେ
ବଜ୍ର, ନୀଳେନ୍ଦ୍ର, ମଣି
ଅମର ପତିଙ୍କି ମନାଇ
ଲଭିଛି କି ଧରଣୀ । ୧୪ ।

ଧନ୍ୟ ହେଲ ଆଜି ବଲୋକ
ଜଗଜ୍ଜନ ଜୀବନ,
ଜନ୍ମ ଜନ୍ମାର୍ଜିତ କଳୁଷ
ହୋଇଗଲା ମୋଚନ । ୧୫ ।

ଗ୍ରହଣ କରନ୍ତୁ ନାହିଁ ବା
ରଙ୍କ ସଜୀବ କରେ,
ସମର୍ପଣ କଲି ମୋ ପ୍ରାଣ
ମନୋଗତ ଭାବରେ । ୧୬ ।

ଭୁବନ ମୋହନ ମାଧୁରୀ
ଡଳ ରୂପରେ ଦେଖି
ଲଭକା ଅନ୍ତରେ ରହିଲେ
ମନ୍ତ୍ରୀ ମଣି ନିରେଖି । ୧୭ ।

ଯେତେବେଳେ ଯାହା ଉପରେ
ପଡ଼ିଯାଏ ନୟନ—
ବିହଙ୍ଗ ସେ ଶୋଭା ବାଗୁରୀ
ପାଶେ ହୁଏ ବନ୍ଧନ । ୧୮ ।

ଅପଲକ ନେନେ ସଚିବ
ଗୃହୀଁ ହୋଇ ତନ୍ମୟ,
ରୂପ ଅନୁରୂପ ବଚନ
ଶୁଣି ହେଲେ ଅଥୟ— । ୧୯ ।

'କ୍ରମେ କ୍ରମେ ତାଙ୍କ ସମୀପେ
କରୁଥାନ୍ତି ଗମନ
କରି ମୂକ, ପଦ୍ର ଶବଦ
ନିଜ ତନୁ ଗୋପନ । ୨୦ ।

ସେ କାଳେ ଶୁଭିଲା ଉତ୍ତର
ଦିଗୁ ରଥ ଶବଦ,
ବିଲୋକିଲେ ରାମ, ଲକ୍ଷ୍ମଣ,
ସୀତା ହୋଇ ସ୍ତବଧ । ୨୧ ।

ଧନୁର୍ଗୁଣ କରି ମାର୍ଜନ
ଯୋଚି ତୀକ୍ଷ୍ଣ ସାୟକ
ଉଭା ହୋଇଗଲେ ଲକ୍ଷ୍ମଣ
ରାମ ମୁଦ ଦାୟକ । ୨୨ ।

ଗୃହ୍ନୁଁ ଗୃହ୍ନୁଁ କ୍ରମେ ଦିଶିଲା
ଅଯୋଧ୍ୟାର ସ୍ୟନ୍ଦନ,
ଦେଖିଲେ ବସିଛି ଭରତ
ଅଶ୍ରୁପୂର୍ଣ୍ଣ ଲୋଚନ । ୨୩ ।

ଏକକୁ ଆରେକ ବିଲୋକି
ହୋଇଗଲେ କାତର,
ସମ୍ଭବ ନୟନୁ ଲୋତକ
ମନ୍ଥି ହେଲା ଅନ୍ତର । ୨୪ ।

ସେକାଳେ ସ୍ୟନ୍ଦନୁ ଓହ୍ଲାଇ
ଧରି ରାମ ଚରଣ,
ସାଷ୍ଟାଙ୍ଗେ ନମିଲା ଭରତ
ବହେ କରି ରୋଦନ । ୨୫ ।

କି ହେଲା କି ହେଲା କାହିଁକି
ଭାଇ କରୁ ରୋଦନ,

କହ କହ ଶୀଘ୍ର ଅଥୟ
ହୋଇଯାଏ ଜୀବନ । ୨୬ ।

ବଶିଷ୍ଠ ଉଠାଇଣ ଅନୁଜେ
ଯମ ସଜୀବ କରେ,
କାରଣ ପୁତ୍ରମନ୍ତ୍ର ସକଳ
ନେବେ ଦଗ୍ଧ ଅନ୍ତରେ । ୨୭ ।

କ୍ରନ୍ଦନ ଧ୍ୱନିରେ ଭରତ
ପିତା ସ୍ୱର୍ଗାରୋହଣ—
କଲେ ଘୋଷିଲ କହୁଁ, ଈଶ୍ୱରଙ୍କ
ବସେ କଲେ ରୋଦନ । ୨୮ ।

ବାତାହତା ହେମ ଲତିକା
ସମ ଶ୍ରବଣେ ସୀତା,
ଘାଣୀଧ୍ୱନି ଜଣା କ୍ରନ୍ଦନେ
ହେଲେ ମହୀ ଲୁଣ୍ଠିତା । ୨୯ ।

ବୋଇଲେ ରେ ବଧି ! ଜଗତେ
ତୁହି ବଡ଼ ଦାରୁଣ
ବନବାସ ଦୁଃଖେ ଦେଲୁ ଯା
ଏହି ଘୋର କଷଣ । ୩୦ ।

କଲ ନାହିଁ ବନେ ଶ୍ୱଶୁର-
ଙ୍କର ପଦ ଅର୍ଚ୍ଚନ
କେହ କର ନାହିଁ ଭଲରେ
ମୁଖ ପଦ୍ମ ଦର୍ଶନ । ୩୧ ।

ବନେ ଶୁଣି ନାହିଁ ମୋ ଶ୍ରୁତି
ତାଙ୍କ ଅମୀୟ ଭଷା
ଥିଲା ଆଶା ବନୁଁ ଫେରିଲେ
ମେଣ୍ଟିବ ଏ ପିପାସା । ୩୨ ।

ସେ ଆଶା ଲତିକା ଛେଦନ
କଲୁ କାହିଁକି ବଧି
ଦୁଃଖ ପରେ ଦୁଃଖ ଦେଇ ତୁ
ଅରଜିଲୁ କୁକିର୍ତ୍ତି । ୩୩ ।

ଅନ୍ତିମେ ନ କଲି ଦର୍ଶନ
ମୁଖେ ସଲିଲ ଦାନ
ଜ୍ୟେଷ୍ଠ ପୁତ୍ରବଧୂ ହୋଇଣ
ଧିକ ହେଲା ମୋ ପ୍ରାଣ । ୩୪ ।

ଧନ୍ୟ ଲୋ ଊର୍ମିଳା, ମାଣ୍ଡବୀ,
ଶ୍ରୁତକୀର୍ତ୍ତି, ଭଗିନୀ !
ପିତାଙ୍କ ଅନ୍ତିମ କାଳରେ
ହେଲ ସେବାକାରିଣୀ । ୩୫ ।

ଦେଉଥିବ କେଉଁ ସାନ୍ତ୍ୱନା
କିଏ ମାତାଙ୍କୁ ମୋର
ଅଯୋଧ୍ୟାକୁ ଗ୍ରାସିଥିବ ତ
ମହା କରୁଣ ଘୋର । ୩୬ ।

ଶ୍ରୀରାମ, ଲକ୍ଷ୍ମଣ, ଭରତ,
ତଥା ଶୋକେ ଅଧୀର
କିଏ କରୁଅଛି କାହାକୁ
ଅବା ବୁଝାଇ ସ୍ଥିର । ୩୭ ।

ସଘନେ ପୁଛିଲେ ଶ୍ରୀରାମ
ଶତ୍ରୁଘ୍ନ ସଙ୍ଗରେ
ଥିଲ ତ ? ଭରତ ! ପିତାଙ୍କ
ପ୍ରାଣ ଯିବା କାଳରେ । ୩୮ ।

ତ୍ରୁଟି କର ନା ତ ସେବାରେ ?
କହ କି ବ୍ୟାଧି ହେଲା ?

ବନବାସେ ପିତୃ ବିନାଶ
ଦୁଃଖ ବିଧାତା ଦେଲ । ୩୯ ।

ଯେଉଁ ଦିନୁ କଲ ପ୍ରଭୁ ହେ
ତୁମ୍ଭେ ବନ ଗମନ
ସେଦିନୁଁ ଭୋଜନ ଶୟନ
ପିତା କଲେ ବର୍ଜନ । ୪୦ ।

ହାୟ ରାମ! ଧିକ କୈକେୟୀ
କହି ଛାଡ଼ିଲେ ପ୍ରାଣ,
ମାତୁଳ ଆଳୟୁ ଶୁଣିଲୁ
ଆସି ହେ ରଘୁରାଣ । ୪୧ ।

ପଣ କରଥିଲେ ପିଣ୍ଡରେ
ଥିବା ଯାଏ ଜୀବନ
ଦେଖାଇବ ନାହିଁ କୈକେୟୀ
ମୋତେ ତାର ବଦନ । ୪୨ ।

ଭରତ ସଙ୍ଗରେ ସେ ସ୍ଥାନେ
ଆସିଥିଲେ ଯେ ମାନେ
ସାନ୍ତ୍ୱନା ସଲିଳ ଅର୍ପିଲେ
ତାଙ୍କ ଦଗଧ ପ୍ରାଣେ । ୪୩ ।

ନିଜ ନେତ୍ରୁ ଅଶ୍ରୁ ସ୍ୱକରେ
ପୋଛି ରଘୁନନ୍ଦନ
ବୋଇଲେ ଭରତ ! ଭବନେ
ଶୀଘ୍ର କର ଗମନ । ୪୪ ।

ବୈଦେହୀ ସହିତ ଲକ୍ଷ୍ମଣ
ତୁମେ ଅଯୋଧ୍ୟା ଯାଅ
ପିତାଙ୍କ ପଞ୍ଚତ୍ୱ କରମ
ଯଥାବିଧି କରିଅ । ୪୫ ।

ଶ୍ରୀରାମ ଚରଣ ଭରତ
ଧରି ହୋଇ ବିନମ୍ର
ବୋଇଲେ ମୋ ବାଣୀ ଶ୍ରବଣ
କର ହେ ଦୟାମୟ । ୪୬ ।

ହୋଇ ନାହିଁ ଚିତା ପ୍ରଦାନ
ପିତାଙ୍କର ଶବରେ
ତୈଳଘଟେ ତାହା ରହିଛି
ପଣ୍ଡିତଙ୍କ ମତରେ । ୪୭ ।

ବରପୁତ୍ର ରାଜ ଆସନେ
ବସି ଆଜ୍ଞା ପ୍ରଦାନ—
କଲେ ପିତାଙ୍କର ହୋଇବ
ଶବେ ଚିତାଗ୍ନି ଦାନ । ୪୮ ।

ସୀତା ଲକ୍ଷ୍ମଣଙ୍କ ସହିତେ
ପ୍ରଭୁ କରି ବିଜୟ
ପିତାଙ୍କର ଶବ ସତ୍କାର
କର ହେ ଦୟାମୟ ! ୪୯ ।

ଶ୍ରୀରାମ ବୋଇଲେ ଭରତ
ଅବଗୁର ବଚନ
ବାଳକ ପରି ତୁ କପଟ
କରୁଅଛୁ ରଚନ । ୫୦ ।

ପିତାଙ୍କ ଆଦେଶ ଭରତ
କର ନାହିଁ ଲଙ୍ଘନ
ରାଜସିଂହାସନ ତୋତେ ସେ
କରିଛନ୍ତି ଅର୍ପଣ । ୫୧ ।

ମୋତେ ଦେଇଛନ୍ତି ଆଦେଶ
ଚତୁର୍ଦ୍ଦଶ ବରଷ

ବନୌକା ବୈଶରେ ବୁଲିବ
　　　　ବନେ ନୋହୁ ବିମର୍ଷ । ୫୨ ।

ଯାଅ ସୀତା ସଙ୍ଗେ ଲକ୍ଷ୍ମଣ
　　　　ତୁମ୍ଭେ ଅଯୋଧ୍ୟାପୁରେ
ତୁଟି ଘଟିଲାଣି ବିଳମ୍ବିତ
　　　　ସଙ୍କୋଚିତ କାର୍ଯ୍ୟରେ । ୫୩ ।

ଶ୍ରୀରାମ ନିସ୍ୱଣ ବଚନ
　　　　ଶୁଣି ଭରତ ବୀର
ଗୁରୁଜନଙ୍କ ମୁଖ ବସ୍ତୁକ୍ତେ
　　　　କହେ ହୋଇ ଅଧୀର । ୫୪ ।

କଳାବନ୍ତ ରାମ ରାଜୀବ
　　　　ନେତ୍ର ଜନ ମୋହନ
ପିତୃସତ୍ୟ ପାଳ କରିବେ
　　　　ଘୋର ବନେ ଭ୍ରମଣ । ୫୫ ।

ଧର୍ମ ପରାୟଣ ଲକ୍ଷ୍ମଣ
　　　　ବୀର-ମୁକୁଟ-ମଣି,
ଭ୍ରାତୃବତ୍ସଳ ସେ ଶ୍ରୀରାମ
　　　　ବନ ପଥ ଅଗ୍ରଣୀ । ୫୬ ।

ଅଯୋଧ୍ୟା ନଗରୀ କମଳା
　　　　ସୀତା ରୂପେ ନନ୍ଦନୀ,
ପତିପ୍ରାଣା ସେହୁ ଶ୍ରୀରାମ-
　　　　ଚନ୍ଦ୍ର ଅନୁଗାମିନୀ । ୫୭ ।

କେବଳ ଦାନବୀ-ପ୍ରକୃତି
　　　　କୈକେୟୀର ନନ୍ଦନ,
ନୃଶଂସ ନିର୍ମ୍ମମ ଭରତ
　　　　ପକ୍ଷେ ରାଜ୍ୟ ଶାସନ । ୫୮ ।

ଶ୍ରୀରାମ ଲକ୍ଷ୍ମଣ ବୈଦେହୀ
ଯାନ ବନୌକା ବେଶେ,
ଫଳମୂଳ ଖାଇ ବୁଲିବେ
ଘୋର ବନ ପ୍ରଦେଶେ । ୬୯ ।

ଅଯୋଧ୍ୟା ସୌଭାଗ୍ୟ ଭୂଧରେ,
ସିଂହ ହେବ ଭରତ,
ଶୁଣି ସନ୍ତୁଷ୍ଟ ତ ଧରଣୀ,
ବାତ, ଚନ୍ଦ୍ର, ଆଦିତ୍ୟ । ୭୦ ।

ବିମଳ ଅଯୋଧ୍ୟା ଆକାଶେ
ରାମ-ଧବଳ-କର,
ସୌଭାଗ୍ୟ ନକ୍ଷତ୍ର ମଣ୍ଡଳେ
ହୋଇଥାନ୍ତେ ସୁନ୍ଦର । ୭୧ ।

କଳଙ୍କ ଜଳଦ ଜଡ଼ିତ
ଏ ଭରତ ବାଳିଶ,
ନ ଶୋଭୁ ଅଯୋଧ୍ୟା ଗଗନେ
ଶିରେ ପଡୁ କୁଳଶ । ୭୨ ।

କଏ ବଧି ରହୁ କେଉଁଠି
କାଲି ଏହୁ ବରୁଥ,
ଯା ହେବ ଦେଖିଲେ କରନ୍ତି
ନିଷ୍ଠେ ତାକୁ ସହାର । ୭୩ ।

ବୀର-ପର୍ଶୁରାମ ବ୍ରତ ମୁଁ
ଆଜି କଲି ଧାରଣ,
କରିବ ପାପିନୀ କୈକେୟୀ
ଶିର ଖଣ୍ଡେ ଛେଦନ । ୭୪ ।

ତା ପରେ ନାଶିବ ନିଜର
କଳଙ୍କିତ ଜୀବନ.

ମନ୍ତ୍ରୀ ପୁତ୍ର ସଙ୍ଗ କରିବେ
ପିତା ଚିତା-ଗ୍ରହଣ । ୭୫ ।

ଭଦ୍ରବର ଶେଷ ବଦାନ୍ୟ
ଘେନ କୋଦଣ୍ଡଧର,
ତବ ବ୍ରତ କରି ପାଳନ
ମୋ ବ୍ରତେ ମୁଁ ତତ୍ପର । ୭୬ ।

ଆଶ୍ୱାସି ବୋଇଲେ ଭରତେ
ରାମ ମଧୁର ଗୀର,
ସଂସାର ପ୍ରଥମ ଯନ୍ତ୍ରଣା
ବଳେ ନୁହଁ ଅଧୀର । ୭୭ ।

ସୂରକୁଳ ନୃପ ଦିଲ୍ଲୀପ
ରଘୁ, ଅଜଙ୍କ କୀର୍ତ୍ତି,
ପୁଷ୍ପିତା ଲତିକା ସ୍ୱରୂପା
ମଣ୍ଡିଅଛି ଧରଣୀ । ୭୮ ।

ବାଧା ବିଘ୍ନେ ସଦା ଜଡ଼ିତ
ମାନବଙ୍କ ଜୀବନ,
ବହୁବାର ଇତିହାସେ ତା,
କରିଥିବୁ ଶ୍ରବଣ । ୭୯ ।

ଧୈର୍ଯ୍ୟ ଧରି ଯାଅ ଭରତ
ବସି କର ବିଚାର;
ଯେପରି ହୋଇବ ମିହିର-
କୁଳ ଯଶ ପ୍ରସାର । ୮୦ ।

ସତ୍ୟ ଭଗ୍ନ ହେଲେ ଜୀବନେ
ଅଛି କି ପ୍ରୟୋଜନ,
ଅକଳଙ୍କ ସୂର୍ଯ୍ୟ କୁଳେ ମୁଁ
ହେବ ନିନ୍ଦା ଭାଜନ । ୮୧ ।

ସତ୍ୟଭଗ୍ନ ହୋଇ ନଗରେ
ବସି କଲେ ମୁଁ ସୁଖ
କାପୁରୁଷ ହୋଇ କାହାକୁ
ଦେଖାଇବ ଏ ମୁଖ । ୭୨ ।

ତଳେ ମାନ ଦୁଃଖ ଭରତ !
ହୃଦେ ନ ଦିଅ ସ୍ଥାନ,
ଭୋଗିବା, ହୋଇଛି ପୂର୍ବରୁ
ଯାହା ବିଧି ବିଧାନ । ୭୩ ।

ପିତୃ ବିୟୋଗ ଏ ନୁହଁଇ
ବିଧି ପରୀକ୍ଷା ଭାଇ,
ଆବଶ୍ୟକ ହେବ ଅଟଳ
ଯମ, ଧୈର୍ଯ୍ୟ ତା ପାଇଁ । ୭୪ ।

ନାନାପ୍ରକାର ବହୁ ପରୀକ୍ଷା
ହୁଏ ବ୍ରତୀ ଜୀବନେ,
ସେଥିପାଇଁ ବୀର-ସାହାସ
ବାନ୍ଧ ଭରତ ! ମନେ । ୭୫ ।

ପିତା ସତ୍ୟ ଯଥା ମୋ ବ୍ରତ,
ତଥା ମୋର ଆଦେଶ,
ପାଳିବାକୁ ତୋତେ ହୋଇବ
ଜାଣିଥାଅ ଅବଶ୍ୟ । ୭୬ ।

ସାକେତ ନଗରେ ଭରତ
ଶୀଘ୍ର ବାହୁଡ଼ ଯାଅ,
ପିତାଙ୍କର ଶବ ସଂସ୍କାର
ଯଥାବିଧି କରାଅ । ୭୭ ।

ବୃଦ୍ଧ ମନ୍ତ୍ରୀ ଅଛନ୍ତି, କରଣ
କିଆ କଲାପ ଶେଷ,

କରି ପ୍ରଜା ମନ ରଞ୍ଜନ
ପାଳ ଅଯୋଧ୍ୟା ଦେଶ । ୭୮ ।

ବୃଦ୍ଧା ମାତାମାନେ ସମୟେ
ହେଲେ ଚନ୍ତା ମଗନ,
ତୋଷିବୁ ତାହାଙ୍କୁ ଭରତ,
ଭାଷି ମିଷ୍ଟ ବଚନ । ୭୯ ।

ବଧି ବଡ଼ମ୍ବନା ନ ବୁଝି
ସାନ ଜନନୀ ଭାଇ,
ଆପଣାକୁ ନିନ୍ଦ ସର୍ବଦା
କାନ୍ଦୁଥିବେ ମୋ ପାଇଁ । ୮୦ ।

ଭରତ ସଙ୍ଗରେ ବୈଦେହୀ
ବୀର ଲକ୍ଷ୍ମଣ ଯାଅ,
ବୃଦ୍ଧା ମାତାଗଣ ହୃଦୟୁ
ଗୁରୁତାପ ଲିଭାଅ । ୮୧ ।

ବେନିକର ଯୋଡ଼ି ଭରତ
କହେ ହୋଇ ବିନୟୀ,
ମୋ ବାଣୀ କରନ୍ତୁ ଶ୍ରବଣ
ପ୍ରଭୁ ! ହେ ଦୟାମୟ । ୮୨ ।

ଅଟଳ ପ୍ରତିଜ୍ଞ ଲକ୍ଷ୍ମଣ
ଦେବ ଥିଲେ ସଙ୍ଗରେ,
ସହାୟ ହୋଇବେ ତୁମ୍ଭଙ୍କୁ
ଘୋର ବନ ପଥରେ । ୮୩ ।

ପତିପ୍ରାଣା ସୀତା ପ୍ରଭୁ ହେ
ତୁମ୍ଭ ଚାଖୁ ଅନ୍ତର,
ହେବାକୁ ଉତ୍ତମ ବୋଲି ମୋ
ଭାବୁ ନାହିଁ ଅନ୍ତର । ୮୪ ।

ସନ୍ତପ୍ତ ହୃଦୟ ଭରତ
ତବାଦେଶ-ରତନ-
ପାଇ, କରୁଅଛି କେବଳ
ଅଯୋଧ୍ୟାକୁ ଗମନ । ୮୫ ।

କେବଳ ଅଭୟ ବରଦ
ସିଂହାସନ ଭଜନ,
ତୁମ୍ଭର ଶ୍ରୀପଦ ପାଦୁକା
ଦାଓସ ହେଲେ ଅର୍ପଣ । ୮୬ ।

ଅଯୋଧ୍ୟା ସନ୍ତାପ ସାଗରେ
ତାହା ତରଣି କର,
ବଢ଼୍ଣ ଉର୍ମିମାଳ ସହଜେ
ଯାଇ ପାରନ୍ତା ତର । ୮୭ ।

ଶ୍ରୀରାମ ଶ୍ରୀପଦ ପାଦୁକା
ଦେଇଁ ହରଷ ଭରେ,
ପ୍ରଣମି ଚଳିଲେ ଭରତ
ତାହା ବହି ଶିରରେ । ୮୮ ।

ସ୍ନାନ କରି ରାମ ରାଜୀବ—
ନେନ ସୀତା ଲକ୍ଷ୍ମଣ,
ସ୍ଵର୍ଗୀୟ ପିତାଙ୍କୁ ପ୍ରଣମି
କଲେ କାଳ ଯାପନ । ୮୯ ।

ଅଦୂରେ ଲତକା ଅନ୍ତରେ
ରହି ଶୁକ ସାରଣ
ଅମର୍ତ୍ତ୍ୟ ସୁଷମା ବଲୋକ
ତୋଷୁଥାନ୍ତି ନୟନ । ୯୦ ।

ଶ୍ରୀରାମ ଅଟନ୍ତି ପ୍ରତଞ୍ଜ
ଶୁଣ୍ଡି ନିଜ କାମନା,

ପୂର୍ଣ୍ଣ ହେବ ନାହିଁ, ଅନ୍ତରେ
କରି ନେଲେ କଳ୍ପନା । ୯୧ ।

କର୍ତ୍ତବ୍ୟ କହୁଛି ଲଙ୍କାକୁ
ଶୀଘ୍ର ଫେରିବା ପାଇଁ,
ଆଖି ଚେହେଉ ନାହିଁ ସୁଷମା
କ୍ଷେତ୍ର ନେବ ଫେରାଇ । ୯୨ ।

ଫେରି ଆସିବାକୁ କର୍ତ୍ତବ୍ୟ
ଦେଲେ ପକାଇ ପାଦ,
ଛାଡ଼ି ପାରୁ ନାହିଁ ଶ୍ରବଣ
ଭାଷା ରତ୍ନ-ସଂପଦ । ୯୩ ।

ରତ୍ନ ଲଭି ଯଥା ଦାରିଦ୍ର୍ୟ
ଆସେ ହରାଇ ଘରେ,
ସତେବ ରାଜନ ବସିଲେ
ତଥା ରଥ ଉପରେ । ୯୪ ।

ବେଢ଼ ହାନି କରି ପ୍ରଥମେ
ସୂତ ଗୃହଲ ସ୍ୟନ୍ଦନ,
ନବୋଦ୍ବେଶେ ଯାଇଁ ଦେଖିଲ
ଅସ୍ତୋନ୍ମୁଖ ତପନ । ୯୫ ।

ମାଣିକ୍ୟରଞ୍ଜିମ ସାଗରେ
ରଚିଥିଲେ ତପନ,
ନକ୍ଷତ୍ର ସଙ୍କେତେ ସାରଥି
ଚଳାଇଲା ସ୍ୟନ୍ଦନ । ୯୬ ।

ଲଙ୍କାରେ ପ୍ରବେଶୁ ବଳେକ,
ତୋଷେ ବାହ୍ମା ରାବଣ,
ପୁଚ୍ଛିଲେ ଦର୍ଶନ କଲ ତ ?
ଧବା ଭାର ହରଣ । ୯୭ ।

ବୋଇଲି ସଚିବ ହୋଇଲା
ମୋର ଜୀବନ ଧନ୍ୟ,
ଦରଶନ ବେଳୁଁ ଅନ୍ତର
ଭଜୁ ନାହିଁଟି ଅନ୍ୟ । ୯୮ ।

ଶୋଭାବଳୀୟ ମାୟା ବିଧାତା
କରିଥିଲା ଗୋପନ,
ତବ ପ୍ରାସାଦରୁ ଦେଖିଲା
ଆଜି ମୋର ନୟନ । ୯୯ ।

ଶ୍ରୀରାମ, ଲକ୍ଷ୍ମଣ, ଜାନକୀ,
କେତେ ଲାବଣ୍ୟ ମୂର୍ତ୍ତି
ସତ୍ୟ, ଧର୍ମ, ଶୋଭା ଅବା କି
ଧରିଛନ୍ତି ଆକୃତି । ୧୦୦ ।

ରୂପ ମୁଗ୍ଧ ହୋଇ ଝୁରୁ ମୁଁ
କରୁଥିଲି ଲୋକନ,
ସହସା ଆସିଲା ତାହାଙ୍କ
ପାଶେ ଏକ ସ୍ୟନ୍ଦନ । ୧୦୧ ।

କଥୋପକଥନୁ ଜାଣିଲି
ରାମାନୁଜ ଭରତ,
ଫେରାଇ ନେବାକୁ ଆସିଛି
ପିତା ଲଭୁଁ ପଞ୍ଚତ୍ୱ । ୧୦୨ ।

ଜନକ ବିଯୋଗ ଶ୍ରବଣେ
ସର୍ବେ କଲେ ରୋଦନ,
ସ୍ପନ୍ଦନରୁ, ସୁଧା ହୋଇଲା
ମୋର କର୍ଣ୍ଣେ ବର୍ଷଣ । ୧୦୩ ।

ସ୍ୱପୁରେ ଫିର୍ବାକୁ ଭରତ
କୀର୍ତ୍ତ ରଚୁ ବଚନ,

ସମ୍ମତ ନ କଲେ ଛଲେ ହେଁ
ସତ୍ୟବ୍ରତ ବନ୍ଦନ । ୧୦୪ ।

ଧନ୍ୟ ସେ ଭରତ, ଲକ୍ଷ୍ମଣ,
ସୀତା, ଶ୍ରୀରାମ ଧନ୍ୟ,
ଧନ୍ୟ ଭ୍ରାତୃଭକ୍ତ ମାନଙ୍କ
ଧନ୍ୟ ତାଙ୍କ ସୌଜନ୍ୟ । ୧୦୫ ।

କି ପୁଣ୍ୟ ସୌହାର୍ଦ୍ଦ୍ୟ ତାଙ୍କର
କରିଲି ଯା ଶ୍ରବଣ,
ଶୁଣି ନ ଥିଲି ମୁଁ ଶୁଣିବି
ନାହିଁ ଆଉ ଶ୍ରବଣ । ୧୦୬ ।

ଧନ୍ୟ ସେ ତରୁଣ ସମୟେ
ଯାର ଜ୍ଞାନ ପ୍ରବଳ
କୋଟି କଳ୍ପ କାଳ ଅର୍ଜ୍ଜନ
ବଞ୍ଚି ରହିବ କି ଫଳ । ୧୦୭ ।

ସୁକୁମାର ରାଜ ତନୟ
ରାମ ବନୌକା ବେଶେ
ଆସିଛନ୍ତି ଘୋର ବନକୁ
ପିତାଙ୍କର ନିର୍ଦ୍ଦେଶେ । ୧୦୮ ।

ବନେ ବାସ କରି ରହିବେ
ଚତୁର୍ଦ୍ଦଶ ବରଷ
ସତ୍ୟସିଂହ ରାମ ନ ହୋଇ
ଧନ ବିଳାସ ବଶ । ୧୦୯ ।

ପିତାଙ୍କ ବିୟୋଗେ ଭରତ
ବୀର ଶ୍ରେଷ୍ଠ ତନୟ
ନ ଟଳିଲେ, ଶୁଣି ତରଳି
ଯିବ ଶିଳା-ହୃଦୟ । ୧୧୦ ।

ନାଗଣ ହୋଇ ମୁଁ ଆସିଲି
ଆହେ ଅବନୀବର
ତୁମ୍ଭେ ତ ବଟବନ୍ଦୀ ଶେଖର
ତାର ଉପାୟ କର । ୧୧୧ ।

ଦୀର୍ଘଶ୍ୱାସ ମୁଞ୍ଚି ରାବଣ
ବୀରବର ବସ୍ମୟେ
ମଣ୍ଡନେ ଗୋପନେ ବସିଲେ
ଜନଶୂନ୍ୟ ନିଳୟେ । ୧୧୨ ।

ବ୍ରତ ପୂର୍ଣ୍ଣ ପାଇଁ ବିବଧ
ଚିନ୍ତା କରୁଁ ରାଜନ
କେତେକ କାଳ ଅନ୍ତ ହୋଇଲା
କବି କରେ ରଚନ । ୧୧୩ ।



# ଚତୁର୍ଥ ସର୍ଗ

**ରାଗ—ବାଳୀ**

ମନ୍ତ୍ରୀ ଭରତ ଶୁଣି ଆରତ ଲଭି ଭାଳିଲେ ବୀର ।
ଦେବ ଦୁର୍ଲ୍ଲଭ ମଣି ସୁଲଭ ବ୍ରତ କଲେ ସ୍ଥିର । ୧ ।

ହୋଇ ବାମନ ନଭ ସୁମନ ପାଇବା ଆଶା କରି,
ବାଞ୍ଛା ରସାରେ ଲୋକ ହସାରେ ଯିବ ନିଶ୍ଚୟ ସରି । ୨ ।

କି ପ୍ରତ୍ୟୁତ୍ପାଜନ ପୂଜା ଭାଜନ ରଘୁ ରାଜନ ବିନା,
ମୋ ପ୍ରାଣପଣ ନୁହେଁ କାରଣ ଲୋକେ ହସିବେ ମିନା । ୩ ।

ରଘୁନନ୍ଦନ ! ବୀର ବନ୍ଦନ ତବ ଅଟଳ ପଣ;
ସ୍ୱର୍ଣ୍ଣ ଅକ୍ଷରେ ଧରା ବକ୍ଷରେ ହୋଇବ ବିଶୋଭନ । ୪ ।

ଚିନ୍ତା ନ କରି ବାତୁଳ ପରି କି ବୃଥା ପଣ କଲି,
ଲୋଭୀ କାତର କାମୁକ ନର ଉପାଧି ଅର୍ଜିଲି । ୫ ।

ନିଶା ଶେଷରେ ଦର ହାସରେ ଯୋଷା ପାଶରେ ରହି,
ବଧୂ ବଦନେ କୁନ୍ଦ ରଦନେ ସୁଖ ସଦନେ କହି । ୬ ।

ଏ ସସାଗରା ଧରାକୁ ସରା ମନେ ବିଚାର କରି,
ଶଠଙ୍କ ପରି ପଣ ଆଚରି ଯାଉଛି ଆଜି ସରି । ୭ ।

ରାଜଭବନ ଧନ ରତନ ତୁଚ୍ଛ ଗିଆନ କରି,
କାଟନ୍ତି କାଳ ଲଙ୍କା ଭୂପାଳ କବ ବରଞ୍ଚ ଧରି । ୮ ।

ନୈରାଶ୍ୟ ଦୀନ— ଭାବରେ ଦିନ କାଟନ୍ତି ମହୀପାଳ,
ଆଶୁ ଗଡରେ ଚିନ୍ତା ମଡରେ ଗଲା ଅନେକ କାଳ । ୯ ।

ବାର୍ଦ୍ଧି ବଶରେ ଅର୍ଦ୍ଧ ବାସରେ ଶୁଭିଲା ଗରଜନ,
ଦୂଷଣ ଖରେ ବିନାଶି ଖରେ କାଟି ମୋ ନାସାକର୍ଣ୍ଣ । ୧୦ ।

ଦେଲେ କଷଣ ଏହ୍ନ ଭୂଷଣ ନୁହେଁ କି ତୋର ଭାଇ !,
କହି ବେଗରେ ରାଜା ଆଗରେ ପଡ଼ିଲୀ ବାମା ଯାଇ । ୧୧ ।

ଥାନ୍ତି କୁଟୀରେ ପଞ୍ଚବଟୀରେ ବନୌକା ବେଶେ ବେନି,
ସେନ୍ତ ସୋଦରେ ଅତି ମୋଦରେ ନାରୀଏ ସଙ୍ଗେ ଘେନି । ୧୬ ।

ଭରମୁଁ ବନେ ବନା କାରଣେ ଏ ଦୁଃଖ ହେଲେ ମୋତେ,
ଏହା ବିଧାନ ଗୁଣ ନିଧାନ କନ୍ଦ୍ର କହୁଲ ତୋତେ । ୧୭ ।

ବ୍ୟାଜ ଗର୍ଜନ କରି ସର୍ଜନ ସୂର୍ପଣଖାକୁ ବୀର,
ବୋଇଲେ ଧରି ଶତ୍ରୁ ଡୋହରି ଆଣିବ ତୁଅ ସ୍ଥିର । ୧୮ ।

ସେ ବେନି ଯତି କି ଦ୍ରବ୍ୟେ ମତି ବଲାନ୍ତି ରହି ବନେ,
ଆବର ନାରୀ ଥାଏ କାହାରି କି ଶ୍ରଦ୍ଧାଥାଏ ମନେ । ୧୯ ।

ବୋଇଲା ସୂର୍ପ— ଣଖା ସ୍ୱରୂପ ନାସାରେ ବାସ୍ତ ଦେଇ,
ଭ୍ରମନ୍ତି ବନେ ନିର୍ଭୟ ମନେ ଶର ଧନୁଷ ନେଇ । ୧୬ ।

ସୁନ୍ଦରୀ ମଣି ତାଙ୍କ ରମଣୀ ଗୃହୁ ସର୍ବ ତ ମୁଖୀ,
ମାନ୍ତ ସୁରଙ୍ଗ ଶିଶୁ କୁରଙ୍ଗ ପାଇଲେ ବଡ଼ ସୁଖୀ । ୧୭ ।

ଛୁଡ଼ାଇ ଘାସ କରାଏ ଗ୍ରାସ ମୃଗ ଶାବକ ଧରି,
ସର୍ବେ ଆସୀନ ମୃଗ ଅଜିନ ମୁନିମାନଙ୍କ ପରି । ୧୮ ।

ଶ୍ରବଣେ ବୀର କରିଲେ ସ୍ଥିର ଋଷିନନ୍ଦନୀ ସୀତା,
ଧନେ ବିରାଗ ମୃଗେ ସରାଗ ଲକ୍ଷଣ ପ୍ରଶଂସିତା । ୧୯ ।

ମିଳନ୍ତେ ବାଟ ହେଲେ ଉଚାଟ ବ୍ରତ ପୁରିବା ଆଶେ,
ସୁଖ ସଦନ କଞ୍ଜ ବଦନ ଛନ୍ତି ତ ବନବାସେ । ୨୦ ।

ସତେ ମୋହର ସନ୍ତାପହର ହୋଇବେ ରଘୁବୀର,
କାମନା ପୂର୍ଣ୍ଣ କରିବେ ତୂର୍ଣ୍ଣ ପ୍ରଦାନି ନବ ପ୍ରାଣ । ୨୧ ।

ବନସ୍ଥ ଗିରେ ମାରୀଚ ବୀରେ ଭାଷିଲେ ଲଙ୍କପତି,
ନ ଭାଳ ଆନ ରଖ ମୋ ମାନ ତୋ ବିନା ନାହିଁ ଗତି । ୨୨

ବନୌକା ବେନି ନାରୀଏ ଘେନି ପଞ୍ଚବଟୀରେ ବାସ,
ଅଛନ୍ତି ଚିର, ବନେ ବିହରି ଫଳମୂଳ ହିଁ ଗ୍ରାସ । ୨୩ ।

ଚକ୍ଷୁମୋହନ ହେମ ବରନ କୁରଙ୍ଗୀରୂପ ଧରି,
କୁଟୀର ପାଶେ ଖେଳ ଉଲ୍ଲାସେ ବିଚିତ୍ର ଭଙ୍ଗୀ କରି ।୨୪।

ଧରିବା ଆଶେ ଗଲେ ତୋ ପାଶେ, କେମନ ବନୌକା ବର;
ଭଙ୍ଗୀ ଅନନେ ଘୋର କାନନେ ଧାଇଁବୁ ଖରତର ।୨୫।

ତୋ ପଛେ ଜଣେ ଧାଇଁଲେ ତେଣେ ଆନେ ଯତନ କରି;
ନେଲେ କୌଶଳେ ବା ବୁଦ୍ଧିବଳେ ନାଶି ଆଣିବ ଧରି ।୨୬।

ରାଜା ଆଦେଶ ପାଇ ଖରେଶ ମାରୀଚ କଲା ଗତି;
ଗୁହ୍ନିଁ ସାଗରେ ନଭେ ବେଗରେ ହୋଇ ଚପଳମତି ।୨୭।



# ପଞ୍ଚମ ସର୍ଗ

(ରାଗ—ବଙ୍ଗଳାଶ୍ରୀ କେଦାର)

ପଞ୍ଚବଟୀରେ ରାମଚନ୍ଦ୍ର କୁଟୀର-
ପାଶେ ଭ୍ରମିଲା ଯାଇ ମାରୀଚ ବୀର
ରମ୍ୟ ହେମ କୁରଙ୍ଗୀ ରୂପ ଧାରଣ
କଲା, ବଞ୍ଚିବ ନିଜ ପ୍ରାଣ କାରଣ, ଯେ । ୧ ।

ଅପୂର୍ବ ଶୋଭା ରାଶି ବିରାଜେ ଧରି
କୁଟୀର ସମ୍ମୁଖେ ସେ' ଗଲା ବିହରି
ଜନକ-ରାଜ ଜେମା, ଦେଖି ସେ ଶୋଭା
ଧରିବା ପାଇଁ ହେଲେ ଅଶେଷ ଲୋଭା, ଯେ । ୨ ।

ଖେଳଇ ରଙ୍ଗେ ଆସି ଜାନକୀ ପାଶେ ।
ଡେଇଁ ପଡ଼ଇ କେତେବେଳେ ଉଲ୍ଲାସେ ।
ଧରିବା ପାଇଁ ସୀତା ବଢ଼ାନ୍ତେ କର,
ଧାଇଁ ପାଶରୁ ହୋଇଯାଏ ଅନ୍ତର, ଯେ । ୩ ।

କୋମଳ ଦୂର୍ବାଦଳ କରେ ଛିଡ଼ାଇ
ଦେଖାନ୍ତି ସୀତା ତାକୁ ଆସିବା ପାଇଁ
ରହେ ଅନତିଦୂରେ ଲଭଣ ଆଶ
ପକାଇ ଦେଲେ ଘାସ କରଇ ଗ୍ରାସ, ଯେ । ୪ ।

ଖାଇ ସାରି ତା ରଙ୍ଗେ ରହେ ନିରେଖି
ତୋଷ ହୁଅନ୍ତି ସୀତା ତା' ଭାବ ଦେଖି
ଧରିବା ପାଇଁ ସତୀ ବଳାଇ ମନ
ତା' ପାଶେ ଗଲେ କରେ ସେ ପଳାୟନ, ଯେ । ୫ ।

ସହାସେ ପଚାରିଲେ କୋଦଣ୍ଡଧର
କୁହ ପ୍ରେୟସି ! ଏ କି ଭାବ ତୁମ୍ଭର

ବଡ଼ ଚପଳ ସଖି ! କୁରଙ୍ଗୀ ଗଢ଼
ତାକୁ ଧରିବା ପାଇଁ ନ ବଳ ମଢ଼, ଗୋ । ୬ ।

ବୃଥା ତା ପଛେ ପଛେ କରି ଭ୍ରମଣ
ବ୍ୟଥା ହେବନି ତବ ମୃଦୁ ଚରଣ
ମୃଦୁଲ୍ ହାସେ ବ୍ରୀଡ଼ାନତ ବଦନେ
ବର୍ଣ୍ଣିଲେ କାନ୍ତା, କାନ୍ତ ପାଶ ଗମନେ, ଯେ । ୭ ।

କ୍ରମେ କ୍ରମେ କୁରଙ୍ଗୀ କୁଟୀର ଦ୍ୱାରେ
ଆସି ଖେଳିଲା ଅଭିନବ ଶୋଭାରେ
ବୋଇଲେ ସୀତା ଏ କି ଜାତ କୁରଙ୍ଗୀ
କେଡ଼େ ସୁନ୍ଦର ତାର ନୟନଭଙ୍ଗୀ । ୮ ।

ଦୃଗ୍ ହ'ଟକ ବଡ ଦଶେ ଝଟକ
ଦେଖି ନୟନ ନାଥ ! ଯାଏ ଅଟକ
ଧରି ଦେଲେ ପାଳନ୍ତେ କରି ଯତନ
କହିଦେଇ ବୈଦେହୀ ହେଲେ ବିମନ, ଯେ । ୯ ।

ପଡ଼ିଗଲା ଶାଶୁଙ୍କ କଥା ମନରେ
ଅଦ୍‌ଭୁତ ଦ୍ରବ୍ୟ ଏତ ପୁଣି ବନରେ
ଲୋଭ କରିବା ମୋର ନୋହେ ଉଚିତ
ହିତ ବଚନ ନ ମାନିଲେ ଅହିତ, ଯେ । ୧୦ ।

କରିବା ପାଇଁ ସତୀ ଭାବ ଗୋପନ
ଦେଖାଇଲେ ଚତୁରେ ସ୍ମିତ ଲପନ
ମାଟି ଚାହିଁଲେ ଦେଇ ନେତ ନିଶ୍ଚଳ
ଖେଳି ଖଞ୍ଜନୁଜିତ ଯାହା ଚଞ୍ଚଳ, ଯେ । ୧୧ ।

ଚନ୍ତା ସୂଚନା ପାଇ କୋଦଣ୍ଡଧର
ବୋଇଲେ ବନ୍ଧୁ ! ଏହା କେତେ ମାତର
ହେମ କୁରଙ୍ଗୀ ଆଣି ଦେବ ଏକ୍ଷଣି
ଭାବ ନା ଗଣ-ବଣା-ଏଣି-ଲକ୍ଷଣୀ, ଗୋ । ୧୨ ।

ଆସିବାଯାଏ ମୂର୍ଚ୍ଛା, କୁଟୀରୁ କ୍ଷଣେ
ଯିବ ନାହିଁଟି କାହିଁ କହି ଲକ୍ଷ୍ମଣେ
ମନା କରିବା ପାଇଁ ସତୀ ରତନ
ବାହାର ହେଲା ନାହିଁ ମୁଖୁଁ ବଚନ, ଯେ । ୧୩ ।

ବାହାର ହେଲେ ବୀର କୋଦଣ୍ଡଧର
ଦେଖି ଧାଇଁଲା ମୃଗୀ ଅତି ପ୍ରଖର ।
ଝଲ୍ଲା ସ୍ୱରୂପ ତାର ଚପଳ ଗତି
ତା' ପଛେ ଧାଇଁଛନ୍ତି ଜାନକୀପତି, ଯେ । ୧୪ ।

କ୍ରୋଧେ ଖର-ବଦନା ତୋଷନ୍ତେ ବାଣ
ବାଜି, ବ୍ୟାକୁଳ ହେଲା କୁରଙ୍ଗୀ ପ୍ରାଣ
ଉଚ୍ଚେ ଡାକିଲା ରଖ ରଖ, ଲକ୍ଷ୍ମଣ !
ତୁ ଅଟୁ ବୀରଗଣେ ସୁବିଚକ୍ଷଣ, ଯେ । ୧୫ ।

ପଶୁମୁଖରୁ ନରବାଣୀ ଶ୍ରବଣ
କରି ବିସ୍ମୟ ହେଲେ ବୀର-ବନ୍ଦନ
ଭାବିଲେ ଏହି ବିପଦର କାରଣ
ଫୁରି ଉଠିଲା ବାମ ଭୁଜ, ନୟନ ଯେ । ୧୬ ।

କୁଟୀରେ ଥାଇ ସୀତା ଶୁଣି ସେ ଗିର
ଲକ୍ଷ୍ମଣ ପାଶେ ଥାଇଁ ହେଲେ ଅଧୀର
ପବନେ ଯଥା ଲଜ୍ଜାବତୀ ଲତିକା—
ହୋଇଲେ, ସତୀକୁଳ-ମଣ୍ଡଳ-ଟୀକା ଯେ । ୧୭ ।

ଘନଶ୍ୱାସ ପକାଇ ହୋଇ ଚକିତ
କହିଲେ ହେ ଲକ୍ଷ୍ମଣ କି ଆଚମ୍ବିତ ?
ଶୁଣୁ କି ତ ଭାଇଙ୍କ ଆରତ ନାଦ
ପଡ଼ିଲା ବନରେ କି ଘୋର ପ୍ରମାଦ, ଯେ ? ୧୮ ।

ଯାଅ ଲକ୍ଷ୍ମଣ. କ୍ଷଣେ ନ କର ହେଳା
ହେଳା କଲେ ନିଶ୍ଚୟ ବୁଡ଼ିବ ଭେଳା

ମନ୍ଦି ହେଉଛି କମ୍ପା ମୋର ଅନ୍ତର
ହୋଇଲ ବେଳୁ ସ୍ୱାମୀ ପାଶୁ ଅନ୍ତର ଯେ । ୧୯ ।

ବିପଦ ପଡ଼ିଲା କି ପତିଙ୍କୁ ବନେ
ଯାଅ ଯାଅ ଲକ୍ଷ୍ମଣ! ନ ରହ କ୍ଷଣେ
ଲକ୍ଷ୍ମଣ ବୋଇଲେ ମା! ନ କର ଭୟ
ଜାଣି ନାହିଁ କି ରାମ ବିଶ୍ୱବିଜୟ. ଗୋ! । ୨୦ ।

ତ୍ରିପୁର ଦହ୍ନ ପାରେ ଯାହାର ବାଣ
ବିଶ୍ୱ ବିଜୟୀ ବୀର ଆରତତ୍ରାଣ
ନୁହେ ସେ ରାମ ରମଣୀପ୍ରାୟ ବଚନ
କରୁଛି କେହି ଶଠ ବ୍ୟାଜେ ରଚନ, ଯେ । ୨୧ ।

ବିପଦ କାଳେ ହୁଏ ବିକୃତ ସ୍ୱର
ଅବିଲମ୍ବେ ହେ ବୀର! ଚଳ ସତ୍ୱର
ପ୍ରଭୁ ଆଦେଶ ସତୀ! କରି ଲଙ୍ଘନ
ଯିବାକୁ ହେଉ ନାହିଁ ମୋହର ମନ, ଯେ । ୨୨ ।

ଅକାଳେ କି ନିୟମ କହନ୍ତି ଧୀରେ
ବିପଦେ ବସି ବୀର କିପାଇଁ ଧୀରେ ?
ଭ୍ରାତୃବତ୍ସଳ ପରା ତୁମ୍ଭେ ଲକ୍ଷ୍ମଣ
ଆଜି ଏକି ତୁମ୍ଭର ନବ ଲକ୍ଷଣ, ହେ ? । ୨୩ ।

ନ ଗଲ ନାହିଁ ବୀର ଗଲା ମୋ ପ୍ରାଣ
'ଅଚେତ ହେଉଁ କହି ହା ରଘୁତ୍ରାଣ
ସତୀ ମୁଖେ ଲକ୍ଷ୍ମଣ ଜଳ ସେଚନ-
କରି ଯତନେ କରାଇଲେ ଚେତନ, ଯେ । ୨୪ ।

ଚେତ ବୋଇଲେ ଯାଇ ନାହିଁ ଲକ୍ଷ୍ମଣ ?
ବୀର ବୋଇଲେ ଯାଉଅଛି ଏ କ୍ଷଣ
କାଟି କୁଟୀର ଦ୍ୱାରେ ତିନୋଟି ଗାର
ଧନୁଷ ଧରି ବୀର ହେଲେ ବାହାର, ଯେ । ୨୫ ।

ବୋଇଲେ ଏ ଗାରକୁ ଲଙ୍ଘିଲେ ସତି !
ଜାଣିଥାଅ ପଡ଼ିବ ନିଶ୍ଚେ ବିପତ୍ତି
କହି ସିଂହ ଗତିକି ବହି ଲକ୍ଷ୍ମଣ
ଆରତଧ୍ୱନି ଦିଗେ କଲେ ଗମନ, ସେ । ୨୬ ।

ବିଚ୍ଛେଦ, ଅପବାଦ-ତପସ୍ୱୀ ବେଶ-
ଧରି କୁଟୀର ପାଶେ ହେଲେ ପ୍ରବେଶ
ବୋଇଲେ ବ୍ୟାଜବେଶୀ ତପସ୍ୱୀ ଧୀରେ
ମୋ ପ୍ରାଣ ରଖ କିଏ ଅଛ କୁଟୀରେ, ଗୋ । ୨୭ ।

କ୍ଷୁଧା ତୃଷାରେ ଦହି ହେଉଛି ପ୍ରାଣ
ଯେ କିଛି ଖାଦ୍ୟ, ପାନ କରନ୍ତୁ ଦାନ
କରୁଣାମୟି ! ବେଗେ କରୁଣା କର
କ୍ଷୁଧାରେ ପ୍ରାଣ ଦଗ୍ଧ ହୁଏ ମୋହର, ଗୋ । ୨୮ ।

କୁଟୀରେ ଥାଇ ସତୀ କଲେ ଲୋକନ
କରି ତପସ୍ୱୀ ପୂତ ବାଣୀ ଶ୍ରବଣ
ଗମ୍ଭୀର ଜ୍ଞାନ ଜଣାଉଛି ବଦନ
କୁଳ ଚନ୍ଦ୍ରାର ଦିଏ ତନୁ ଶୋଭନ, ସେ । ୨୯ ।

ଜାତି, ଜ୍ଞାନ, ଗୌରବ ତପସ୍ୱୀ ବେଶ
ବୃଦ୍ଧି କରୁଛି ଗଜ ଅଙ୍ଗେ ବିଶେଷ
ବିସ୍ମୟ ପାରାବାରେ ସନ୍ତରି ସତୀ
ଗୃହିଁ ଚକିତ ହେଲେ ଅପୂର୍ବ ଯତି, ସେ । ୩୦ ।

ବୋଇଲେ ତପି ! କ୍ଷଣେ ବିଶ୍ରାମ କର
ଏକ୍ଷଣି ଆସିବେ ମୋ କାନ୍ତ, ଦେବର
ଧ୍ୟାନ-ରତନ ଲଭ ପରି ଆନନ୍ଦ-
ହୋଇ, ପୂଜିବେ ତବ-ପବିତ୍ର ପଦ, ସେ । ୩୧ ।

କରାଇ ମିଷ୍ଟ ପକ୍ୱ ଫଳ ଭୋଜନ
ଧନ୍ୟ ମଣିବେ ସ୍ୱାମୀ ନିଜ ଜୀବନ

ଦେବ, ବ୍ରାହ୍ମଣ ତପୀ-କୁଳ ସେବକ
ଅଟନ୍ତି ମୋ ଜୀବେଶ ରଘୁତିଳକ, ଯେ । ୩୨ ।

କ୍ଷୀଣ ସ୍ୱରେ କହିଲେ କପଟବେଶୀ
ତୁମ୍ଭ ପାଶରେ କି କହିବ ବିଶେଷି
ତୁମ୍ଭେ ତ ଅଟ ସତୀ-ସମାଜ ହୀରା
ରମଣୀ ଶ୍ରେଣୀ-ଶିରୋମଣି ସୁଧୀରା, ଯେ । ୩୩ ।

କ୍ଷୁଧାତୁରଙ୍କୁ ସଦ୍ୟ ଖାଦ୍ୟ ପ୍ରଦାନ
ତୃଷିତ ଜନେ ତଥା ସଲିଳ ଦାନ
ତା ସମ ଫଳ ନାହିଁ ଆନ ଦାନରେ
ସ୍ୱୟଂ ବିଚାର ଦେଖ ସତୀ ମନରେ, ଯେ । ୩୪ ।

ହେଉ, ମା ଜୀବ ଯିବ ଏ ବୃକ୍ଷ ମୂଳେ
ଦୟା ତ ହେଲ ନାହିଁ ତୁମ୍ଭର ଠୁଲେ
ଶ୍ରମ ସଂହର ରାମ ନାମ ଉଚ୍ଚାରି-
ବସିଲେ, ବ୍ରତ ସିଦ୍ଧି ପଥ ବିଚାରି, ଯେ । ୩୫ ।

ଦେଖି ତପସ୍ୱୀ ଦୁଃଖ ରାମ ରମଣୀ
ଭାବିଲେ କି ଉପାୟ ମୋର ଏକ୍ଷଣି
କୁଟୀରୁ କିପରି ମୁଁ ହେବି ବାହାର
ସ୍ୱାମୀ ନାମେ କାଟିଛନ୍ତି ଲକ୍ଷ୍ମଣ ଗାର, ଯେ । ୩୬ ।

ସ୍ୱାମୀଙ୍କ ଆଣ ନ କଲେ ମୁଁ ଲଙ୍ଘନ
କ୍ଷୁଧାରେ ଗଳିଯିବ ତପୀ ଜୀବନ
ଏ କଠୋର ପରୀକ୍ଷା ତୋର ନିୟତି!
କରିବି କି ଉପାୟ କାହିଁ ମୋ ଗତି, ଯେ । ୩୭ ।

ବିବେକୀ ହୋଇ ତୁମ୍ଭେ ଅବଳା ବଳ
ଦେଖାଅ କର୍ମପଥ ମୋର ବିମଳ,
ନ କଲେ ନିୟମ ଏ କାଳେ ଲଙ୍ଘନ
ନିକି କୁପିବେ ମୋରେ ରଘୁନନ୍ଦନ, ଯେ । ୩୮ ।

ସୁପକ୍ୱ ଫଳ, ଜଳ ହସ୍ତରେ ଧରି
କୁଟୀରୁ ବାହାରନ୍ତେ ରଘୁ ସୁନ୍ଦରୀ
ଯୋଗମାୟାଙ୍କୁ ରାଜା କରି ସ୍ମରଣ
କୁଟୀର ପାଶେ ରଖାଇଲେ ସ୍ୟନ୍ଦନ ଯେ । ୩୯ ।

ଦିଶିଲା ଯାନବର କାନନ ପରି
ଜାଣି ତା' ନ ପାରିଲେ ରଘୁ ସୁନ୍ଦରୀ
ପକାନ୍ତେ ଧୀରେ ଧୀରେ ଲଳିତ ପଦ
ରଥବର ଲଭିଲା ମୋକ୍ଷ ସମ୍ପଦ, ଯେ । ୪୦ ।

ନବନୀତଙ୍କୁ ଜିତ ମୃଦୁ-ବଚନ—
ସଲିଳ, ତପୀ ଅଙ୍ଗେ କଲେ ସେଚନ
ଅରୁଣ ମୁଖକଞ୍ଜ କରି ପ୍ରସାରି
ବୋଇଲେ ସତୀ ଶୁଣ ହେ ତପଗୁରୁ !, ଯେ । ୪୧ ।

ଏ ପକ୍ୱଫଳ କନ୍ଦ କର ଭୋଜନ
କ୍ଷୁଧା, ପିପାସା କରିଥାଅ ମୋଚନ
ଦିଅନ୍ତୁ କହି ତପୀ ପ୍ରସାରି କର
ଚଳାଇଲା ସ୍ୟନ୍ଦନ ସୂତ ସତ୍ୱର ଯେ । ୪୨ ।

ଉଠିଲା କ୍ରମେ ନଭେ ସ୍ୟନ୍ଦନବର
କମ୍ପାଇ ଭୀମ ଘୋଷେ ବନ, ଭୂଧର
ମାର୍ଗଣ ଗତି ଜିଣି ଚଳନ୍ତେ ଯାନ
ଭୂତଳେ ଗୃହିଁ ସତୀ ହେଲେ ଅଜ୍ଞାନ, ଯେ । ୪୩ ।

ବାୟୁମଣ୍ଡଳ ଜିଣି ଗମୁଁ ସ୍ୟନ୍ଦନ
ସ୍ପନ୍ଦନ କଲେ ସତୀ ଲଭି ଚେତନ
ବଳବନ୍ତ ପକ୍ଷୀଏ ଜଟାୟୁ ନାମେ
ରଥପଥ ରୋଧିଲା ବିହଗ ଭୂମେ, ଯେ । ୪୪ ।

ଲଙ୍କେଶ 'ଚନ୍ଦ୍ରହାସେ' ତା ପକ୍ଷଦ୍ୱୟ—
ଛେଦି, ବାହୁଡ଼ିଲେ ରଥ ହୋଇ ନିର୍ଭୟ

ପୁରତେ ପୁର ଏକ ଦେଖି ସୁନ୍ଦର
ସ୍ୱାମୀ ସଙ୍କେତ ଆଶା ହୃଦୟେ ଧରି, ଯେ । ୪୫ ।

ସ୍ୱନାମାଙ୍କିତ ଚୂଡ଼ ଦେଲେ ଯେକାଙ୍କି
ରଖିଲେ ଯତନେ ତାହା ସୁଗ୍ରୀବ ପାଖ
ଦକ୍ଷିଣ ଦିଗେ ସତୀ କରୁ ଗମନ
ଦେଖିଲେ ତମୋମୟ ସାରା ଭୁବନ, ଯେ । ୪୬ ।

ଯାମିନୀ ଭ୍ରମ ଛଡ଼ାଇଲେ ଦ୍ୟୁମଣି
ବଢ଼ିଲ ସତୀଚିନ୍ତା ସାଗରମଣି
ଆକୁଳେ ଘନଶ୍ୱାସ କଲେ କ୍ରନ୍ଦନ
ହା, ରାମ । ରଘୁକୁଳ-ତାପ-ଚନ୍ଦନ. ହେ । ୪୭ ।

ହେ ପ୍ରଭୋ ! ସୁରକୁଳ-ମଉଡ଼ମଣି
କି ବିପଦେ ପଡ଼ନ୍ତି ତବ ରମଣୀ
ସୁଦୟା ବହି ନାଥ କର ଉଦ୍ଧାର
ତୁମ୍ଭ ବିନେ କେ ପ୍ରତିକାର ଏହାର, ଯେ । ୪୮ ।

ଏପରି ସତୀଶ୍ୱାସ କରୁ କ୍ରନ୍ଦନ
ସିଂହଳ ଦ୍ୱୀପେ ପ୍ରବେଶିଲା ସ୍ୟନ୍ଦନ
ସୀତା ସନ୍ଦେହ ସିନ୍ଧୁ ମଧ୍ୟେ ସନ୍ତରି
ଗଲେ, ଦର୍ଶିଲା ଏକ ରମ୍ୟା ନଗରୀ, ଯେ । ୪୯ ।

ନ ଜାଣି-ଥିଲେ ସତୀ ଭକ୍ତ ଅନ୍ତର
ନାଶ ପ୍ରାଣେ ହେବାର କଥା କାତର
ଜାଣି ଅଜାଣ ପରି କରନ୍ତି ଖେଳ
ଜଗତ ପିତାମାତା କୌତୁକ ମେଳ. ଯେ । ୫୦ ।



# ଷଷ୍ଠ ସର୍ଗ

**ସ୍ୱର—ବଙ୍ଗଳାଶ୍ରୀ**

ସୂତକୁ ଆଦେଶି ସିଂହଳ ଗଗନେ
ରାଜା ଭ୍ରମାଇଲେ ରଥ ।
ବୈଦେହୀ ଵିଜୟ- ହେତୁ ହେବ ଭାବ
ପୂର୍ଣ୍ଣ ମୋର ମନୋରଥ । ୧ ।

ସ୍ୱର୍ଣ୍ଣ ଉଠୁଛି ରମଣୀୟ ପୁର-
ରତ୍ନ, ଅସ୍ତ ରବିକରେ
ଶତ ଶତ ସୌଧ, କନକ କଳସ
ଧରି ଜନମନ ହରେ । ୨ ।

ଚନ୍ଦ୍ର-ଗତି-ଯାନେ ଦକ୍ଷିଣ ନୟନ
ଦେଖଇ ଜାନକୀଙ୍କର ।
ସୁନୀଳ ସାଗର ମର୍କତ ପ୍ରାକାର
ପରି ଦିଶେ ମନୋହର । ୩ ।

ବାମ ନେତ୍ର ସତୀ ଢାଳିଲେ ଦେଖନ୍ତି
ପୂଗ, ନାରିକେଳ-ବନ।
ରଜତ, ରତନ- ଶୋଭାକୁ ବହୁଛି
ତା ସଙ୍ଗେ ରାଜ ଭବନ । ୪ ।

ଫଳିତ ପାଦପ ଭୂଧର ଶିରକୁ
ପ୍ରସାରନ୍ତେ ରବିକର ।
ଅଶୋକ ବନରେ ରଖିଲେ ଲଙ୍କେଶ
ବିହାୟସୁ ଯାନବର । ୫ ।

ରାଜ ଅନୁଜ୍ଞାରେ ପୁଚ୍ଛୁ ବାହାରନ୍ତେ
ପୁର-ଲକ୍ଷ୍ମୀ-ମନ୍ଦୋଦରୀ ।

ଆନ ବାମା ତାଙ୍କ ସଙ୍ଗରେ ଚାଲନ୍ତେ
ବଧୂବୃନ୍ଦ ସହଚରୀ । ୬ ।
ସୁନ୍ଦରୀ ରମଣୀ- ଶ୍ରେଣୀ, ରାଜମାର୍ଗେ
ସଧୀରେ ଚାଲନ୍ତେ ପଦ ।
ଅବନୀ ସୁନ୍ଦରୀ ଲଭିଲ କି ଆଜ
ଅମର୍ତ୍ତ୍ୟ ଗୋପ୍ୟ ସମ୍ପଦ ? । ୭ ।

କନକ ଥାଳରେ କର୍ପୂର, ଚନ୍ଦନ,
ସୁବାସ-କୁସୁମ ହାର ।
କାଳାଗୁରୁ ଧୂପ- ପାତ୍ର ଧରି କେହ୍ନ-
ସୁନ୍ଦରୀ, ହେଲେ ବାହାର । ୮ ।

ରାଜପୁର ମାର୍ଗେ ବିଦ୍ୟୁତ ଆଲୋକ
ସେ କାଳେ ଉଠିଲା ଜଳି ।
ପୁର ବାଳଗଣ ପ୍ରତି ପୁରଦ୍ୱାରେ
ଜାଳି ଦେଲେ ଦୀପାବଳୀ । ୯ ।

ଦେବ ମନ୍ଦିରରେ ଶୁଭିଲା ସେ କାଳେ
ଭେରୀ, ମର୍ଦ୍ଦଳ, ପଟହ
ବାଦ୍ୟରାଜ ବାଜ ପୁର ପ୍ରତିଧ୍ୱନି-
ଯାଇ ଶୁଭେ ଗହ ଗହ । ୧୦ ।

ପଦାଗ୍ର ବିଲୋକି ପଦ୍ମିନୀ ନାୟିକା-
ମାନେ କରୁଛନ୍ତି ଗତି ।
ନିଶ୍ଚଳ ନୟନା ଗମ୍ଭୀର ଭାବନା
ଯାର ପତି ମାତ୍ର ଗତି । ୧୧ ।

ଦକ୍ଷିଣ କରକୁ ହଲାଇ ହଲାଇ
କେତେକ ମୁଗ୍ଧା ତରୁଣୀ ।
ସସ୍ମିତ ବଦନା ପରିହାସ ଛଳେ
ହୁଅନ୍ତି ଅଗ୍ର-ଗାମିନୀ । ୧୨ ।

ସ୍ୱପ୍ନ ଚମକାଇ ବିଷାଦ ବଦନା
ହସ୍ତିନୀ ନାୟିକାଗଣ-
ଗମନ କରନ୍ତି ପୃଥୁଳାଙ୍ଗୀ ଆଁନେ
କର୍ଣ୍ଣ ବନ୍ଧୁ ସମୀକ୍ଷଣ । ୧୩ ।

ବିମର୍ଷ ବଦନା ଶଙ୍ଖିନୀ ରମଣୀ
ରଚୁଛନ୍ତି ଦ୍ରୁତଗତ ।
ଚୌଦିଗେ ନୟନ ଯୁଗଳ ବୁଲାଇ
ବୃଥା ମଣ୍ଡି ତାପେ ମତ । ୧୪ ।

ଅଦୂରେ ଦେଖିଲେ ଅଶୋକ କାନନ
ମଧ୍ୟେ, ବିନୋଦ-ଭବନ
ବିଦ୍ୟୁତ ଆଲୋକ କରାଇଛି ତାର
ସୌର କର ଶୋଭାବନ । ୧୫ ।

ଭବନ ଭିତରେ ସୁରମ୍ୟା ସରସୀ-
ପୂରେ କୁମୁଦିନୀ ବାଳା
କାନ୍ତ ଆଗମନେ ବାଚେ ଶିର ତାଳ
ତଡ଼ନ୍ତି ଭ୍ରମରମାଳା । ୧୬ ।

ବିନୋଦ ଭବନ ଦକ୍ଷିଣେ ଶୋଭଇ
ପୁଷ୍ପଭରା ଉପବନ
ଅନାୟାସେ ମନ, ପ୍ରାଣ ମୋହିନିଏ
ମଧୁର ଅଳି ଗୁଞ୍ଜନ । ୧୭ ।

ଦ୍ୱିଗୁଣିତ କରି ଅଛନ୍ତି ଉଦ୍ୟାନ
ଶୋଭାରାଶି ସୁଧାକର
କୁସୁମ ସୌରଭ ଚରଣି ପବନ—
ସନ୍ତାପ କରେ ଅନ୍ତର । ୧୮ ।

ସତୀଙ୍କ ଦର୍ଶନେ ଲଳସା ଲସିତ
ପୁର ବାମା—ନେତ୍ରଗଣ

ଅଥୟ ଅନ୍ତରେ ଭୁମୁ ଭୁମୁ କଲେ
ସତୀ କାନ୍ତ ଦରଶନ । ୧୯ ।

ବସିଛନ୍ତି ସତୀ ବାମକର କଞ୍ଜ
ଅରପି ଗଣ୍ଡ ଦର୍ପଣେ
ଆନ କର ରଖି ମୁକତ ସରଣୀ
ପ୍ରବାଳ ରୁଚ ଚରଣେ । ୨୦ ।

ତନଜ, ଶ୍ରୁତ ଅଗୋ— ଚର ରମଣୀୟ—
ଦେହେ ତପସ୍ୱିନୀ ବେଶ
ତଥାପି ଉପମ୍ୱା ଗଣଙ୍କ ଗୌରବ
ରଖି ଦେଉନାହିଁ ଲେଶ । ୨୧ ।

ମାତା କୋଳେ ଅଶ୍ରୁ ମୁଞ୍ଚି ବସିଛନ୍ତି
ନିଃଶଙ୍କେ ରାମ ରମଣୀ
କରଯୋଡ଼ି ବାମେ ଉଭା ହୋଇଛନ୍ତି
ଲଙ୍କେଶ୍ୱର ସୀମନ୍ତିନୀ । ୨୨ ।

ସେ କାଳେ ପ୍ରଣମି ଶିରେ ଦେଲେ ବୋଳି
ପଦଧୂଳି ମନ୍ଦୋଦରୀ
ଆନନ୍ଦାଶ୍ରୁ ନେତ୍ରେ କରଯୋଡ଼ି ଉଭା
ହେଲେ ଲଙ୍କା ପୁରନ୍ଦରୀ । ୨୩ ।

ଆନ ବାମାଗଣ ପ୍ରଣମିଲେ ତଥା
ଦର୍ଶନେ ହୋଇ ତନ୍ମୟ
କରଯୋଡ଼ି ରାଣୀ ସଙ୍ଗରେ ଗାଇଲେ
ଜୟ ସୀତା ରାମ ଜୟ । ୨୪ ।

ସତୀ ପଦ ପୂଜା ସାରି ମନ୍ଦୋଦରୀ
ମସ୍ତକେ କରି ଅର୍ପଣ
ସୀତା ପଦେ ନମି ଭବନେ ଲଙ୍କେଶ
କରିଲେ ସନ୍ଧ୍ୟା ତର୍ପଣ । ୨୫ ।

ରମ୍ୟ ସିଂହାସନେ     ବସାଇ ସତୀଙ୍କି
ଲଙ୍କା ନଗରୀ ସୁନ୍ଦରୀ
ଯେଝା ମତେ ହୃଦ     ପୂଜାରେ ଲଗିଲେ
ସଂସାର ତାପ ସଂହର । ୨୬ ।

ଧୂପ, ଦୀପ ଦେଇ     ଉଭା ହେଲେ ସବେ
କୁସୁମେ କରି ସୁବେଶ
ଖୁଆଇବା ପାଇଁ     ତ୍ରିଜଟାକୁ ରାଣୀ
ଗୋପନେ ଦେଇ ଆଦେଶ । ୨୭ ।

ସମାନ ବୟସା     ତ୍ରିଜଟା ସଙ୍ଗରେ
ପାଞ୍ଚ ସାତ ସହଚରୀ—
ଯୋଗାଇ ଆଦେଶ     ମାଗି, ଭବନକୁ
ବଳେ ହେଲେ ମନ୍ଦୋଦରୀ । ୨୮ ।

ସଂଶୟ ସାଗରେ     ସନ୍ତରନ୍ତି ସତୀ
ଧରି ରାମ ନାମ ତରୀ
ମନ ଜାଣି ସେବା     କରୁଥାଏ ରହି
ପାଶେ ତ୍ରିଜଟା ସୁନ୍ଦରୀ । ୨୯ ।

ବହୁ ଅନୁରୋଧେ     ତ୍ରିଜଟା ସୁନ୍ଦରୀ
କଣ୍ଟି ସ୍ୱାଦୁ ପକ୍ୱ ଫଳ
ସତୀ କର ଧରି     ଖୁଆଇଲା ଯତ୍ନେ
କରି କେତେ କଉଶଳ । ୩୦ ।

କାନ୍ତେ ମନ ପ୍ରାଣ     ଅରପି ଶୋଇଲେ
ଅଯୋଧ୍ୟା ନଗରୀ ରମା
ଶତଗୁଣ କରି     ଅଶୋକ କାନନ
ମୋଦ ଭବନ ସୁଷମା ।  ୧ ।

ବୃନ୍ଦା ନାରୀ ବେଶେ     ନେଇ ପଦ୍ମ ଅଶ୍ରୁ
ମୁଞ୍ଚି ଧରଣୀ ସୁନ୍ଦରୀ

ପ୍ରବେଶ ହୋଇଲେ          ସଙ୍ଗେ ସେନା ସୁପ୍ତି
ତନ୍ଦ୍ରାବତୀ ସହଚରୀ । ୩୨ ।

ସୁପ୍ତି-ବାଳା ଆସି          ଆଶ୍ୱାସି ଡାକିଲା
ଉଠ ଗୋ ରଘୁ ସୁନ୍ଦରୀ !
ତୋ ଦୁଃଖେ ଦୁଃଖିନୀ          ହୋଇ ଆସିଛନ୍ତି
ଦେଖ ଜନନୀ ତୋହର । ୩୩ ।

ସୁପ୍ତି . ଅନୁଜ୍ଞାରେ          ଚାହିଁଲେ ଜନକ—
ଜେମା, ପାଶେ ଡନ ନାରୀ
ଉଭା ହୋଇଛନ୍ତି          ଜୀବ ମୂର୍ତ୍ତିବତ
ନେତ୍ରୁ ମୁଞ୍ଚି ଅଶ୍ରୁ ବାରି । ୩୪ ।

ଚିନ୍ତା କରନା ମା !          କହି ପ୍ରବୋଧିଲେ—
ସୁତାଙ୍କୁ ଧରଣୀ ରାଣୀ
କର ପଲ୍ଲବରେ          ସର୍ବାଙ୍ଗ ଆଉଁସି
ପୋଛନ୍ତି ନୟନରୁ ପାଣି । ୩୫ ।

ରଜନୀ ମଙ୍ଗରେ          ଆସିଅଛି ମୁହିଁ
ଶୁଣି ତୋ ଦାରୁଣ ଦୁଃଖ
ତୋ ପାଶରେ ସଦା          ଜଗି ମୁଁ ରହିଛି
ହୁଅନା ଆଉ ବିମୁଖ । ୩୬ ।

ମାଆ କୋଳେ ଝିଅ          ରହିଥିବା ଯାଏ
କହ କି ଭାବନା ତାର ?
ଅଳ୍ପ ଦିନେ ଆସି          ତୋ ଦୁଃସହ ଦୁଃଖ
ରାମ କରିବେ ସଂହାର । ୩୭ ।

ଅର୍ଦ୍ଧ ବୟସରେ          ସ୍ୱାମୀଙ୍କି ହରାଇ
ସେକାଳେ ନାରୀ-ରମଣୀ
ଝିଲ୍ଲି ରବେ କାନ୍ଦ          ଉଠୁ ସ୍ୱପ୍ନ-ବାଳା
ହୋଇଲା ଅଗ୍ରଗାମିନୀ । ୩୮ ।

ଆସ ମା, ଆସ ମା କହୁ ବଳପିଲେ
ବିଚ୍ଛେଦ ବଧୂର ସୀତା
ଚଙ୍କ ଉନ୍ନାଇ ହସଇଲ ପର
ଅନ୍ତରେ ହୋଇ ଦୁଃଖିତା । ୩୯ ।

ସତ୍ୟ କି ସ୍ୱପନ ଭାବ ସନ୍ତରଲେ
ସଂଶୟ ସାଗରେ ସତୀ
ସ୍ୱାମୀ ଆଗମନ ସ୍ୱପ୍ନ ଫଳ ସ୍ମରି
ବଲେକିଣ ଚଉକତ । ୪୦ ।

ନିଜ କେଶ, ବାସ, ଶ୍ରପୂନ ଲକ୍ଷଣ
ବାମ ଦକ୍ଷିଣ ନିଃଶ୍ୱାସ-
ଆଗ ପଛର କଥା ଗୁହିଁଲେ ମିଳଲ
ନାହିଁ ଉଷାର ଆଭାସ । ୪୧ ।

ଫୁଟି ଆସି ନାହିଁ ଉଷା ପରପାଟୀ
ଛୁଟି ଆସି ନାହିଁ ତମ
ତୁଟି ପାଇ ନାହିଁ କମଳ ଲମ୍ପଟ
ଲୁଟି ସୁଗନ୍ଧ କୁସୁମ । ୪୨ ।

ରଜନୀନ୍ତ ଥରେ ମାତ ତାମ୍ରଚୂଡ଼
ଉଡ଼ ନାହାନ୍ତି ଶେଫାଳି
ବୁଡ଼ି ନାହିଁ ବନ— ଭୂମି ସୁଶୋଭନ
ଛୁଡ଼ି ନାହିଁ ବଗ କାଳ । ୪୩ ।

ବାନ୍ଧ ହୋଇନାହିଁ ନିଶି ତମ-ଚନ୍ଦ୍ର
ଚନ୍ଦ୍ର ହୋଇନାହିଁ ଯୋଗ
ନନ୍ଦ ଲଭିନାହିଁ ସିକତା ପ୍ରାନ୍ତର
ଚର ଚନ୍ଦ୍ରବର୍ତ୍ତୀ ଭୋଗ । ୪୪ ।

ଲୁଚ ଯାଇନାହିଁ ସଭୟେ ପେଚକ
ମେଚକ କୀଚକ ବନେ

ଶୁଚିର ସେ ରୁଚି ଅଳି ମଣ୍ଡିନାହିଁ
ରୁଚିର କମଳ ଗଣେ । ୪୫ ।

ବହୁ ନାହିଁ ଧୀରେ ପ୍ରସୂତ ମରୁତ
କହୁନାହିଁ କାକ କାଗ
ସହୁନାହିଁ ଦୁଃଖ ପିଣ୍ଡିକ-ବିହଗ
ରହୁନ୍ତି ଭ୍ରମଣ-ରାଗ । ୪୬ ।

ଗଗନ ତମାଳ ଲତାରେ ତାରକା
ହୀର ପୁଷ୍ପଚୟ ଫୁଟି
ସ୍ୱାମୀ ଅଦର୍ଶନ ହେତୁ ଯାଉଛନ୍ତି
ଗୋଟି ଗୋଟି ହୋଇ ତୁଟି । ୪୭ ।

ରଙ୍ଗ ପରପାଟୀ— ଶାଢୀ ପିନ୍ଧି ଉଷା
ପାଲଟି ନୀଳବସନ
ଦେଖିନାହିଁ ସ୍ୱଚ୍ଛ— ସଲିଳ-ମୁକୁରେ
ବିଶ୍ୱମୋହନ-ବଦନ । ୪୮ ।

ସିଂହଳ—ବନ୍ଧନ— ଉଲ୍ଲାସ ଯାମିନୀ
କ୍ରମଶଃ ହେଉଁ ବନାଶ
ପଦ୍ମିନୀ ନାୟିକା— କୁଳକୁ ହସାଇ
ମିହିର ହେଲେ ପ୍ରକାଶ । ୪୯ ।

ସନ୍ଧ୍ୟା ଆଗମନ ଉପଲକ୍ଷେ ବୀର
ପୁରେ ମହୋତ୍ସବ କରି
ସକଳ ସଭା— ପଦ ପୂଜା କରି
କାଟନ୍ତି ଦିବା ଶର୍ବରୀ । ୫୦ ।

ରାଜ ଦମ୍ପତିର ପ୍ରୀତ ଆରାଧନା
ଲଭିଣ ରାମ ମୋହିନୀ
ଅଶୋକ ବନରେ ଥିଲେହେଁ ଦଶନ୍ତି
ଯେସନ କାଶୀ ନଳିନୀ । ୫୧ ।

ଲଙ୍କା ଜିଣିବାକୁ      ଡରେ ଥିଲେ ସୁଦ୍ଧା
ସତୀତ୍ୱ-ତୀକ୍ଷ୍ଣ-କୃପାଣ
ଧୈର୍ଯ୍ୟ-ହୀନ ହୋଇ—      ଯାଏ ଯୋଗ ହୀନା
ଅବଳା କୁସୁମ ପ୍ରାଣ । ୫୨ ।

ତ୍ରିପୁର ବିଜୟୀ      ରାମ ଶ୍ୟାମ ଅଙ୍ଗ
ଜାଣିଥିଲେ ସୁଦ୍ଧା ସତୀ
ସିନ୍ଧୁ ଲଙ୍ଘି ସ୍ୱାମୀ      କପରେ ଆସିବେ
ଭାବନ୍ତି କୋମଳମତି । ୫୩ ।

ଲଙ୍କା ସ୍ୱେବା ସ୍ୱର୍ଗେ      ପୂଜା ପାଉଥିଲେ
ସୁଦ୍ଧା ସୀତା ସତୀ ତନୁ
ଶ୍ରୀରାମଙ୍କ ଅଙ୍କ      ଲୀଳାର ମାଧୁରୀ
ପଲକେ ନ ଯାଏ ମନୁ । ୫୪ ।

ଦେବ ଅହୋରାତ୍ର      ବ୍ରହ୍ମାଙ୍କର ମଣି
କାଟିଲେ ରାମ ରମଣୀ
ଗୃହ ହାସମୟୀ      କୁମୁଦିନୀ ବାଳା
ଗୃହିଁ ଯଥା ଦିନମଣି । ୫୫ ।

କଳ୍ପନା ରାଜ୍ୟରେ      ବସି ପତିପ୍ରାଣା
ରାମ ନୀରଦ ସୁନ୍ଦର-
ତନୁ-ସରେ, ନେତ୍ର-      ହଂସକୁ ଖେଳାଇ
ହେଉଥିଲେ ମୋଦଭର । ୫୬ ।

ସେହି କାଳେ କେହି      ପ୍ରବେଶିଲା ଆସି
ରାଜନଗର-ବାସିନୀ
ଜନକ ନନ୍ଦିନୀ      ପାଶେ ମୃଦୁହାସେ
ପ୍ରଗଳ୍ଭା-ଯୁବା-କାମିନୀ । ୫୭ ।

ସତୀଙ୍କ ପ୍ରସାଦ-      ପୂର୍ଣ୍ଣ ମୁଖ ଦେଖି
ଭାଷିଲା ନମି ଚରଣେ

କି ଚିନ୍ତା କର ମା ! ଅଶୋକ କାନନ-
ମଧ୍ୟେ ରହ୍ଥ ଅକାରଣେ । ୬୮ ।

କହୁଥିଲେ ରାଜା ଅର୍ଦ୍ଧ ସ୍ୱର୍ଗ ପଦ
ତପସ୍ୱିନୀ ଆଗମନେ-
ଅନୁଭବଲେଣି, ତୂର୍ଣ୍ଣ ହେବ ଛନ୍ତ
ପୂର୍ଣ୍ଣ ଆଶା ପୋଷି ମନେ । ୬୯ ।

ଜାଣ ପ୍ରାଣେ ସୀତା ଭାବଲେ ଅଦ୍ଭୁତ
ମୋ ପାଶେ ସତୀତ୍ୱ ରତ୍ନ
ଧର୍ମ-ଶାସ୍ତ୍ର-ଖଡ୍ଗ ଧର ତା' ରକ୍ଷଣେ
କରିବ ନାହିଁ କି ଯତ୍ନ ? । ୭୦ ।

ପୁଣି ବିଚାରିଲେ ପିତାଙ୍କ ମୁଖରୁ
କରିଛି ମୁହିଁ ଶ୍ରବଣ
ସିଂହଳ-ବଦନ ଅଖଣ୍ଡ ମଣ୍ଡଳେ
ଯଜ୍ଞ, ଧର୍ମପରାୟଣ । ୭୧ ।

ସୀତାଙ୍କର ମନ ଯଣଲବ୍ଧ ଭବ-
ସ୍ୱରୂପ କରୁ କଳ୍ପନା
ମୀମାଂସକ ପର ବିବେକ ବସିଣ
କଲା ତା' ସମାଲୋଚନା । ୭୨ ।

କବି— ଜ୍ଞାନ ପରିଚୟ ପ୍ରଥମେ ମିଳିଲା
ପର ରମଣୀ ହରଣ
ଦ୍ୱିତୀୟେ ଜଗତେ ଖ୍ୟାତ ହୋଇ ଅଛି
ଯା ମୁଖ୍ୟ ନାମ ରାବଣ । ୭୩ ।

ମୀମାଂସକ—ଶରଣ, ବରଣ, ନ ବିଚାରି ମନ
କପଟ କରୁ ହରଣ
ଅଶୋକ ବନରେ ରଖାଇଲା କିମ୍ପା
ନ ନେଇ ରାଜଭବନ । ୭୪ ।

'ପଞ୍ଚବଟୀ ବନୁ ଅଶୋକ ବନକୁ
ଆଣିବା କ୍ଷମତା ଯାର
ବଳ ନ ପାଇଲା ରାଜଭବନକୁ
କପଟ ନେବାକୁ ତାର । ୬୫ ।

ସେ ରାଜଦମ୍ପତୀ ଯୋଗୀ ଜ୍ଞାନ କରି
କରନ୍ତି ପଦ ବନ୍ଦନ
ଏ ପୁଣ୍ୟ ଭବରେ ଦୋଷାରୋପଣ ତୁ
କପଟ କରୁଛୁ ମନ ! । ୬୬ ।

ରାବଣ ଶବ୍ଦର ଅର୍ଥ ଭାବୁଛ କି
ଯା କହୁଛି ବ୍ୟାକରଣ
ନୀତିଜ୍ଞ, ଶାସ୍ତ୍ରଜ୍ଞ ବାହାରେ ଦେଖାନ୍ତି
ଭୀମ,ନିଷ୍ଠୁର ଲକ୍ଷଣ । ୬୭ ।

ଯା' ଓ୍ୱରେ ବଶ- ହୋଇଛନ୍ତି ଦେଖ
ତ୍ରିଦଶ ଅମର ଚୟ
ଶୁଣୁ ନାହୁଁ ବେଦ- ଧ୍ୱନି ଶୁଭୁଅଛି
ଜୟ ଲଙ୍କେଶ୍ୱର ଜୟ । ୬୮ ।

କବି— ଯେତେ ଜ୍ଞାନ ଥିଲେ ସଦା ରାଜକୁଳ
ପ୍ରିୟ କାମିନୀ-କାଞ୍ଚନେ
ବୁଝାଇଲେ ବୃଥା କି ହେବ ବିବେକ
ଭୟ ହୁଏ ମୋର ମନେ । ୬୯ ।

ରଘୁବଂଶ ଜାତ ଦଶରଥ ନୃପ
କୈକେୟୀର ଅନୁଗତ
ସ୍ୱର୍ଗରାଜା ଇନ୍ଦ୍ର, ଗୁରୁ ପତ୍ନୀ ହରି
ହେଲେ ବେଶ୍ୟା ପ୍ରେମେ ରତ । ୭୦ ।

ମୀମାଂସକ—ଅନ୍ୟରାଜା ପରି କେବେହେଁ ନୁହନ୍ତି
ବୃଦ୍ଧ ସିଂହଳ-ବନ୍ଦନ

ବଳସି ପାରନ୍ତା ଯାହା ମନ ଭୃଙ୍ଗ
ରଚ ବାଳା ପୁଷ୍ପବନ । ୭୧ ।

କାମ ପ୍ରଲୋଭନ ପଞ୍ଚବଟୀ କାନ୍ତ
ନାହିଁ ତ ସୀତା ହରଣେ ?
କେଉଁ ଗୁଣେ ସାମ୍ୟ ଜଣା ପଡ଼ୁ ନାହିଁ
ଦ୍ୱିତୀୟତଃ ଅଦର୍ଶନେ । ୭୨ ।

ମଦନ ଲାଳସା ଅଙ୍କୁରଏ ଯିନା
ସୌମ୍ୟା ନାଗରୀ ଲକ୍ଷଣ
ତପସ୍ୱିନୀ ଠାରେ ଦୃଷ୍ଟି ବିପରୀତ
ତାହାର ନୋହେ କି ମନ ? ୭୩ ।



## ସପ୍ତମ ସର୍ଗ

ଆଶ୍ରମେ ଭରମି ଶରଘାତ ଗମ,
ସମୀପେ, ପ୍ରବେଶ ହୋଇଲେ ଶ୍ରୀରାମ । ୧ ।

ଶର ଲକ୍ଷଣଲେ ତା'ଅଙ୍ଗୁ ବାହାର,
କର ଭୂଷଣାର କରନ୍ତି ବଗୃହ । ୨ ।

ପାଳିବାକୁ ସୀତା କରିଥିଲେ ମନ,
ଦେଖି କୁରଙ୍ଗୀର କନକ ବରନ । ୩ ।

ଧରି ନ ପାରି ମୁଁ 'ପେଷିଲି, ମାର୍ଗଣ,
ଶବେ ଅଛି ଆଜ କେଉଁ ପ୍ରୟୋଜନ । ୪ ।

ସୂଚନା ସ୍ୱରୂପ ଏହାର ଅଜନ—
ନେଇ ସନ୍ତୋଷିବ ଋଷିକନ୍ୟା ମନ । ୫ ।

ଘନ ବନେ ବଦୂ୍ୟତ୍ ବଳସ ଲକ୍ଷଣ
ବନ୍ଧ ସେହିକାଳେ ମିଳିଲେ ଲକ୍ଷ୍ମଣ ୬ ।

ବିପଦ ସୂଚନା ଦେଉଥିଲା ମନ,
ପ୍ରମାଣ କଲା ତା, ଅନୁଜ ଗମନ । ୭ ।

ଅଥୟ ଅନ୍ତରେ ପୁଚ୍ଛିଲେ ଲକ୍ଷ୍ମଣେ,
କାହିଁକି ଆସିଲୁ କହ ଭାଇ ? ବନେ । ୮ ।

ବୋଇଲେ ସୌମିତ୍ରି ଶୁଣି କି ଶବଦ,
ବୈଦେହୀ ପେଷିଲେ ହୋଇଣ ସ୍ତବଧ । ୯ ।

ମୁଖ ମୃଗ ହୋଇ ଭରତୀ ବହ୍ନାନ,
ଗୃଳଲେ ରାଘବ ନଭେ ହୋଇ ଲୀନ । ୧୦ ।

ମାର୍ଗଣରୁ ବେଗ ହୋଇ ଗତିବନ୍ତ
କୁଟୀର ସମୀପେ ହେଲେ ଉପଗତ । ୧୧ ।

ସାନୁଜେ କୁଟୀରେ ନ ପାଇଣ ସୀତା,
ତତକ୍ଷଣେ ଗ୍ରହି ଲଭ ଘୋର ଚିନ୍ତା । ୧୨ ।

ଅଥୟ ଅନ୍ତରେ ଚପଳ ନୟନେ,
ସୀତା ଅନ୍ୱେଷଣେ ବାହାରିଲେ ବନେ । ୧୩ ।

ଶୋକ, ବ୍ୟଗ୍ର—ଚିନ୍ତା, ଅଧୈର୍ଯ୍ୟ ବିଗ୍ରହ-
ଧରି କଲେ ବେନିଭାଇଙ୍କି ଆଶ୍ରୟ । ୧୪ ।

ସେସ୍ଥାନଙ୍କ ସଙ୍ଗେ ଶ୍ରୀରାମ ଲକ୍ଷ୍ମଣ,
ବୁଲି ବୁଲି ସୀତା କଲେ ଅନ୍ୱେଷଣ । ୧୫ ।

ଗମନ୍ତେ ବିପକ୍ଷ ଜଟାୟୁ ପଥରେ,
ଗୌଣ ସ୍ୱରେ ରାବ ମୁମୂର୍ଷୁ ପ୍ରାଣରେ । ୧୬ ।

ପଡ଼ିବାର ଦେଖି ଆଶ୍ୱାସି ସ୍ୱ କରେ,
ବସିଲେ ଶ୍ରୀରାମ ତାହାର ପାଶରେ । ୧୭ ।

କ୍ଷୀଣସ୍ୱରେ ପକ୍ଷୀ ସୀତାଙ୍କ ସନ୍ଦେଶ,
କହି ନ ସାରୁଣୁ ତା ପ୍ରାଣ ହେଲା ଶେଷ । ୧୮ ।

ବୁଝିଲେ ଶ୍ରୀରାମ ସିଂହଳ ବନ୍ଦନ,
ସୀତା ନେଲା କରି ମୋ ପକ୍ଷ ଛେଦନ । ୧୯ ।

ସିଦ୍ଧତପା ବିକାଳଜ୍ଞ ଋଷିବର,
ଶସ୍ତ୍ର, ଶାସ୍ତ୍ରଗୁରୁ ଥିଲେ ରାମଙ୍କର । ୨୦ ।

ପଢ଼ାଇଥିଲେ ସେ ପଶୁ, ପକ୍ଷୀ ଭାଷା
ତେଣୁ ଦାଶରଥି ବୁଝିଲେ ସହସା । ୨୧ ।

ତହୁଁ ବୀର ରସ ହୋଇ ମୂର୍ତ୍ତିବନ୍ତ,
ବେନିଭାଇ ସଙ୍ଗେ ଚାଲିଲା ସନ୍ତତ । ୨୨ ।

ଭୋଜନ ଶୟନ ସ୍ନାନାଦି ବର୍ଜନ,
କରି ଘନ ବନେ କରନ୍ତି ଭ୍ରମଣ । ୨୩ ।

ନିବିଡ଼ ଭୀଷଣ ବିଜନ କାନନ,
କରି ହୁଏ ନାହିଁ ଦିଗ ନିରୂପଣ । ୨୪ ।

ନ ଦିଶନ୍ତି ନଭେ ତମୋହା ତରଣି,
ଏତେକ ଦୁର୍ଗମ ବନ୍ଧୁର ସରଣି । ୨୫ ।

ବନ୍ୟ ତାମ୍ରଚୂଡ଼ ଶ୍ୱାପଦ ଗର୍ଜନ,
ବିନା ଅନ୍ୟ ଧ୍ୱନି ଶୁଣେ ନାହିଁ କର୍ଣ୍ଣ । ୨୬ ।
ଶାର୍ଦ୍ଦୂଳ ଝଲକନେ ଭୟେ ମୃଗକୁଳ,
ଧାବନ୍ତି ହୋଇଣ ଜୀବନ ଆକୁଳ । ୨୭ ।
କଣ୍ଟକ କଷାର ପୂର୍ଣ୍ଣ ମହୀଧର,
ତୁଙ୍ଗ ଶୃଙ୍ଗେ ହୋଇଛନ୍ତି ମନୋହର । ୨୮ ।
କାହିଁ ଅଜଗର କୁଣ୍ଡଳି କୁଣ୍ଡଳେ'
ମୃଗ ଶିଶୁ ଧରି ଗ୍ରାସଇ ସକଳେ । ୨୯ ।
ଦଳ ଦଳ ଦନ୍ତବନ୍ତ ମତ୍ତ-କରୀ
ଚାଲୁଛନ୍ତି ତରୁଶାଖା ଭଗ୍ନ କରି । ୩୦ ।
ପଙ୍କ ବୋଳି ହୋଇ ସ୍ନେହେ ଗଣ୍ଡାଦଳ,
ଭଦ୍ର ମୁଥାମୂଳ କରନ୍ତି କବଳ । ୩୧ ।
କୃଷ୍ଣବର୍ଣ୍ଣ ବପୁ ବିକଟ ଦଶନ
ଅସଂଖ୍ୟ ବରାହ କରନ୍ତି ଭ୍ରମଣ । ୩୨ ।
ଦଳ ଦଳ ହୋଇ ଭ୍ରମନ୍ତି ବଣିଆ,
ବ୍ୟାଘ୍ରମାନେ ଯାଙ୍କୁ ମଣନ୍ତି ବଳିଆ । ୩୩ ।
ଶ୍ରମ କ୍ଲାନ୍ତ ଲଭି କହିଲେ ଲକ୍ଷ୍ମଣ,
ଚଳୁ ନାହିଁ ପ୍ରଭୁ ଆଉ ମୋ ଚରଣ । ୩୪ ।
ଲକ୍ଷ୍ମଣ ବଚନେ ଅଶ୍ରୁ ନେତ୍ରେ ରାମ,
ଜଳ ଖୋଜି ନ ପୂରନ୍ତେ ମନସ୍କାମ । ୩୫ ।
ଆତ୍ମୁଣ୍ଡି ଲଡ଼କା କାଟି ତୀକ୍ଷ୍ଣ ଶରେ,
ତୃଷା ନିବାରିଲେ ସେ ରସ ପାନରେ । ୩୬ ।
କହୁଁ କହୁଁ ଦିବା ହେଲା ଅବସାନ,
ଅସ୍ତାଚଳେ ଗତି କଲେ ବିବସ୍ୱାନ । ୩୭ ।
ଯାଉଁ ଜଳୁ ଆଶା ପୋଷିଣ ଅନ୍ତରେ,
ପ୍ରବେଶିଲେ ଏକ ଝରଣା ନିକଟରେ । ୩୮ ।

ଉପଲ ଗରଭ ଏକ କ୍ଷୁଦ୍ର ନାଳ,
ବକ୍ର ଗମନରେ ନିନ୍ଦା କରେ ବ୍ୟାଳ । ୩୯
ନାରିକେଳ ଜଳପରି ନିରମଳ
ଧାଉଁଅଛି ଧ୍ୱନି କରି କଳ କଳ ୪୦ ।
ଚାଞ୍ଚଣ ଆମ୍ରବନ ବନ୍ଧୁବୃକ୍ଷ;
ସନ୍ଧ୍ୟା କରୁଛନ୍ତି ତହିଁ ସ୍ନାନ ସାରି । ୪୧ ।
ସ୍ନାନ କରି ତହିଁ ଶ୍ରୀରାମ ଲକ୍ଷ୍ମଣ,
ଜଳପାନେ ତୃଷା କଲେ ନିବାରଣ । ୪୨ ।
ନିତ୍ୟ କର୍ମ ଶେଷ କରି ତପୀଗଣ,
ବିଲୋକିଲେ ପାଶେ ଶ୍ରୀରାମ ଲକ୍ଷ୍ମଣ । ୪୩
ରାଜ୍ୟଚ୍ୟୁତ ଏହି ନରେନ୍ଦ୍ର ନନ୍ଦନ,
କାନ୍ତି ଚିହ୍ନି ସ୍ଥିର କଲେ ମୁନିଗଣ । ୪୪ ।
ପୁଚ୍ଛିଲେ ସାଦରେ ଆହେ ବୀରବର,
କୁହ କେଉଁ ଦେଶ କରି ଅସୁନ୍ଦର । ୪୫ ।
ଗହନ କାନନେ କରୁଛ ଭ୍ରମଣ,
ମୁଖ ଜଣାଉଛି ବିଷାଦ ଲକ୍ଷଣ । ୪୬ ।
ନିକଟେ କପିଳ ଋଷିଙ୍କ ଆଶ୍ରମ,
ଏ ରାତିକ ରହି ନିବାରନ୍ତୁ ଶ୍ରମ । ୪୭ ।
ତୋଷ ହେବେ ଯଦି ତପୋକୁଳ ଧାମ,
ପୂର୍ଣ୍ଣ ହେବ ନିଶ୍ଚେ ତୁମ୍ଭ ମନସ୍କାମ । ୪୮ ।
ଗୃହ୍ନିଁ ଗୃହ୍ନିଁ ଦେଖେ ଘୋର ତମୋରାଶି,
ଧରଣୀ ସୁଷମା ହେଲଣି ଗରାସି । ୪୯ ।
ଋଷି ଶିଷ୍ୟ ମଣି ପାପ ହରନ୍ତୀ;
ଆଶ୍ରମେ ମିଳିଲେ ହେନ ଦାଶରଥି । ୫୦ ।
ନଗରାଜ ସୁତା ଶ୍ରୀପଦ ପଲ୍ଲବ,-
ଚିନ୍ତା କରି ହୃଦେ କହଇ ମାଧବ । ୫୧ ।



# ଅଷ୍ଟମ ସର୍ଗ

**ନବାକ୍ଷରୀ**

ଶ୍ୟାମଳ ଜଳଦ ସୁନ୍ଦର । ଗାତ୍ର ନୀଳର ପୁରନ୍ଦର ।୧।
ବଶିଷ୍ଠ ଭରତ ଲକ୍ଷ୍ମଣ । ସଙ୍ଗରେ କରନ୍ତି ଗମନ ।୨।
କପିଳ ଋଷିଙ୍କ ଆଶ୍ରମ । ଦେଖିଲେ ଅତି ମନୋରମ ।୩।
ଜଟା କୌପୀନ ବିଭୂଷିତ । ମୁନି କୁମାର ଅଗଣିତ ।୪।
ନିତେ ବସି ଶବ୍ଦେ ପ୍ରାଣ ମନ । କରୁଅଛନ୍ତି ଅଧ୍ୟୟନ ।୫।
କେ ଜାଣୁ ଚାହାଁର ମାହାତ୍ମ୍ୟ । ବ୍ୟାସ ବାଲ୍ମୀକିଙ୍କ ଅନନ୍ତ ।୬।
କେହୁ ପାଣିନି ବ୍ୟାକରଣ । କେ ନ୍ୟାୟ କେ ଷଡ଼ ଦର୍ଶନ ।୭।
ପଢ଼ନ୍ତି ପଦ ସିଦ୍ଧ କରି । ବିବିଧ ମନ୍ତ୍ର ସୂତ୍ର ଧରି ।୮।
ଅଦ୍ୱୈତ କେହୁ ଦ୍ୱୈତବାଦ । ପଢ଼ି ରଚନ୍ତି ଶାସ୍ତ୍ରବାଦ ।୯।
କେ ପଢ଼େ ଅଗମ ନିଗମ । ଲଭନ୍ତି ଉପାୟ ଉତ୍ତମ ।୧୦।
କେ ଠେ ଶାସ୍ତ୍ର କେ ବେଦାନ୍ତ । ଚିନ୍ତନ୍ତି କେ ସ୍ମୃତି ସିଦ୍ଧାନ୍ତ ।୧୧।
ଗ୍ରହ ଗଣନା କେ ଫଳିତ । ମନନ କରନ୍ତି କେ ଗଣିତ ।୧୨।
କେ ଚକ୍ରେ ସୂକ୍ଷ୍ମ ପ୍ରାଣ ଦାଏ । ଗ୍ରହ ନକ୍ଷତ୍ର ଗତି ଧ୍ୟାଏ ।୧୩।
ବାଳକ ଶିଷ୍ୟ ଛୋଟ ମେଳ । ଶ୍ଳୋକ କଣ୍ଠେ ରଚନ୍ତି ଖେଳ ।୧୪।
କେ ଗାଉଛନ୍ତି ଶିଖରିଣୀ । ତୋଟକ ଛନ୍ଦେ କେ ମାଳିନୀ ।୧୫।
ଶାର୍ଦ୍ଦୂଳ ବିକ୍ରୀଡ଼ିତ ଛନ୍ଦେ । ଶ୍ଳୋକ ପଢ଼ନ୍ତି କେ ଆନନ୍ଦେ ।୧୬।
କେ ଗାନ୍ତି ଋଷଭ ଛନ୍ଦରେ । ତାଣ୍ଡବ ନୃତ୍ୟ ଆନନ୍ଦରେ ।୧୭।
ବାଣୀ ନନ୍ଦନ ମୁନି କନ୍ୟା । ଗାନେ କାନନ ଲକ୍ଷ୍ମୀ ଧନ୍ୟା ।୧୮।
କୃଷ୍ଣ ଅଗୁରୁ ଧୂପ ବାସ । ମହକୁ ଅଛି ଚଉପାଶ ।୧୯।
ବିବିଧ ବାଦ୍ୟ ଘଣ୍ଟନିର୍ଘୋଷ । ପ୍ରାଣେ ଥାଏ କରି ତୋଷ ।୨୦।
ନାନା ବରନ ଦାଳଫୁଲ । କରଇ ମାନସ ପ୍ରଫୁଲ୍ଲ ।୨୧।
କୋରକ ପୁଷ୍ପ ଫୁଲ ଧରି । ଶୋଭନ୍ତି ଅସଂଖ୍ୟ ବଲ୍ଲରୀ ।୨୨।
ଅଶେଷ କୁଞ୍ଜ ସୁଶୋଭନ୍ତ । କି ଅବା ଦେବ ନନ୍ଦନ ।୨୩।
ଦେଖିଲେ ଅଯୋଧ୍ୟା ବନ୍ଦନ । କପିଳ ଦେବ ନିକେତନ ।୨୪।

ବ୍ୟାଘ୍ର ଅଜିନେ ଦର୍ଭାସନେ । ବସି ଅଛନ୍ତି ସ୍ଥିର ମନେ । ୨୫ ।
ଅଙ୍ଗ ଗ୍ରୀବା ମେରୁଦଣ୍ଡ । ବକ୍ଷଦ ଶ୍ମଶ୍ରୁ ପୂର୍ଣ୍ଣ ଗଣ୍ଡ । ୨୬ ।
ଦୀର୍ଘ ଲଲାଟ ନାସା, ଉର, । ସ୍ମିତ ବଦନ ମନୋହର । ୨୭ ।
ଅବା ସମସ୍ତ ଜ୍ୟୋତିରାଶି । ଅଙ୍ଗେ ବଳସୁଛନ୍ତି ଆସି । ୨୮ ।
ଧ୍ୟାନେ ଜାଣିଲେ ତପୀବର । ଆଗତ ଦାଶରଥି ଦ୍ୱାର । ୨୯ ।
ପ୍ରଣମୁ ଶ୍ରୀରାମ ଲକ୍ଷ୍ମଣ । ଫେଡିଲେ ତାପସ ଲୋଚନ । ୩୦ ।
ତରଣି ଅନୁପ ତରୁଣୀ । ଭୁବନ ମୁକୁତ ସରଣୀ । ୩୧ ।
ଶ୍ୟାମସୁନ୍ଦର ଗୁଣାକର । ବିଲୋକି ତପୀ ହର୍ଷଭର । ୩୨ ।
ଭାବନ୍ତେ ପୂରିଲ ସଙ୍କଳ୍ପ । ମୁଁ ପାଇଁ ଧ୍ୟାନ କୋଟିକଳ୍ପ । ୩୩ ।
ଏ ଦାଶରଥୀ ଭଗୁରାମ: । ଦନୁଜହର ଗୁଣ ଧାମ । ୩୪ ।
ପିତା ସତ୍ୟରୁ ବାସ ବନେ । ହରାଇ ସୀତା ଦୁଃଖ ମନେ । ୩୫ ।
ଅତି ବିଷାଦ ଘନ ଦନେ । ଭ୍ରମନ୍ତି ମଳିନ ବଦନେ । ୩୬ ।
ଋଷି ହକାରି ଶିଷ୍ୟେ । ଦେଇ ରାମଙ୍କ ଉରେ ଚଯ୍ୟ । ୩୭ ।
ଖୋଲିଲେ ଦନ୍ତେ ଏହାଙ୍କର । ଦ୍ୱାଅ ଚଞ୍ଚଳ ଶ୍ରମହର । ୩୮ ।
ଆଦେଶ ମାତ୍ରେ ଶିଷ୍ୟଗଣ । ଧୋଇଦେଲ ଶ୍ରୀରାମ ଚରଣ । ୩୯ ।
ବୃକ୍ଷର ମୃଗାଜିନ ଯତନେ । ସନ୍ତୁଷ୍ଟ କଲେ ଫଳଗଣେ । ୪୦ ।
କ୍ଷୁଧା ପିପାସା ନିବାରଣେ । ଖେଦାରୁ ଶ୍ରୀରାମ ଲକ୍ଷ୍ମଣ । ୪୧ ।
ମିଳିଲେ ରୂପୀମଣି ପାଶେ । ସୀତା ସନ୍ଦେଶ ପ୍ରାପ୍ତି ଆଶେ । ୪୨ ।
ପ୍ରଣମୁ ଶ୍ରୀରାମ ଲକ୍ଷ୍ମଣ । ବୋଇଲେ ତାପସ ବଚନ । ୪୩ ।
ହେ ଦାଶରଥି ! ରଘୁବର । ହୁଅନା ଅଧିକ କାତର । ୪୪ ।
ବିଧି ବିଧାନ ଭୟଙ୍କର । ସେ ପାଇଁ ବୀର! ଧୈର୍ଯ୍ୟ ଧର । ୪୫ ।
ପିତା ସତ୍ୟରୁ ସିଂହାସନ । ତୁଚ୍ଛ ଆସିଲ ଘୋରବନ । ୪୬ ।
ପଥରେ ଦେବୀ ଦେହା ହରାଇ । ଦୁଃଖେ ଭ୍ରମୁଛ ବେନିଭାଇ । ୪୭ ।
ଜଟାୟୁ ପକ୍ଷୀ ବାର୍ତ୍ତା ସତ୍ୟ । ନିକଟେ ପାଇବ ସେ ତଥ୍ୟ । ୪୮ ।
ସୁଗ୍ରୀବ ସଙ୍ଗେ ଦେଖାକର । ସହାୟ ସେ ହେବ ତୁମ୍ଭର । ୪୯ ।
ପ୍ରତାପୀ ବାଳିର ଭୟରେ । ଲୁଚିଛି ସେ ଋଷ୍ୟମୂକରେ । ୫୦ ।
ତାର ଆଶ୍ରୟ ହନୁମାନ । ବାତ ନନ୍ଦନ ବଳବାନ । ୫୧ ।
ତାଙ୍କର ଯେତେ ପ୍ରଜାଗଣ । ସବୁରେ ମର୍କଟ ବଦନ । ୫୨ ।

ଖାଦ୍ୟ ତାଙ୍କର ଫଳମୂଳ । ବାନର ପରି ବନେ ଠୁଳ ।୫୩।
ସେ ଦେଶେ ଶିକ୍ଷାର ପ୍ରଚାର । ନ ଥାଉ ଚେନ୍ତେ ବଳସ୍ଫାର ।୫୪।
ତାହାଙ୍କ ମଧ୍ୟରେ ଈଶ୍ୱର । ବାଲୀ ବଳିଷ୍ଠ ସୁଗ୍ରୀବର ।୫୫।
ପିତାର ଅଭିଶାପ ପାଇ । ମର୍କଟ ମୁଖ ବେନିଭାଇ ।୫୬।
ଅକ୍ଷରହୀନ ତାଙ୍କ ଭାଷା । କଠିନ ବୁଝିବା ସହସା ।୫୭।
ଏପରି କଥୋପକଥନ । ରାମ ଲକ୍ଷ୍ମଣ ତପୋଧନ ।୫୮।
ହୁଅନ୍ତେ ଗଦ ହେଲା ଶେଷ । ଶ୍ରୀରାମ ମାଗିଣ ଆଦେଶ ।୫୯।
ଯାଉଛୁଁ କହି ପ୍ରଣମିଲେ । କପିଲ ଆଶିଷ ବହିଲେ ।୬୦।
ପୂର୍ଣ୍ଣ ଭୂମିର ସକଳତ । ପୂର୍ଣ୍ଣହେଉ ହେ ପରନ୍ତପ ।୬୧।
ହୋଇ ଦୁର୍ବଳ ଦୀନପକ୍ଷ । ଅଟଳ ନିଜ ଧର୍ମ ରକ୍ଷ ।୬୨।
ଆଶ୍ରମୁଁ ଶ୍ରୀରାମ ଲକ୍ଷ୍ମଣ । ବହିଲେ କିଷ୍କିନ୍ଧା ଗମନ ।୬୩।
ଗମି ନିବିଡ଼ ଘୋରବନେ । ମିଳିଲେ କିଷ୍କିନ୍ଧ୍ୟା ଭୁବନେ ।୬୪।
ଉନ୍ନତ ଋଷ୍ୟମୂକ ଗିରି । ଦେଖିଲେ ପୂର୍ଣ୍ଣ ସ୍ୱର୍ଗ ଶିରୀ ।୬୫।
ଶିଳାଏ ଦିଶନ୍ତି ଶୋଭନ । ଯଥା ସ୍ଫଟିକ ସିଂହାସନ ।୬୬।
ପର୍ବତ ଶୋଭା ଚହିଁ ଚହିଁ । ଗମନ କଲେ ବେନିଭାଇ ।୬୭।
ଭେଟିଲେ ପବନନନ୍ଦନ । ରକ୍ତ ବଦନ ଅପଘନ ।୬୮।
ଅଭୟ ବରଦା ଶ୍ରୀପଦ । -କରୁଣା ମାଧବ ସମ୍ପଦ ।୬୯।
ସେ କପି ନାବ ଆଶ୍ରେ କରି । ବନ୍ଧୁ ସାଗରୁ ଯାଉ ତରି ।୭୦।



# ନବମ ସର୍ଗ

**ସ୍ୱର—ବସନ୍ତ ବସନ୍ତି**

ରମଣୀୟ ବନ ସୁଷମା ବିଲୋକି
ଭ୍ରମୁ ଭ୍ରମୁଁ ରାମ ଲକ୍ଷ୍ମଣ,
ଭେଟିଲେ ପଥରେ ପ୍ରଭଞ୍ଜନ ସୁତ
ହନୁମାନ ଶାନ୍ତବଦନ ।
ମଧୁରେ, ଭାଷିଲେ ଜାନକୀରମଣ,
କିଏ ତୁମ୍ଭେ ବାରୁ କହି ପାରିବ କି
କେଉଁଠି ସୁଗ୍ରୀବ ସଦନ । ୧ ।

ଶ୍ୟାମଳ ଧବଳ ବପୁ ଜ୍ୟୋତିର୍ମୟ
ବୀରମୂର୍ତ୍ତି ଧାରୀ ତାପସ-
ବେଶୀଙ୍କି, ବିଲୋକୁ ମାରୁତି ହୃଦୟ-
ଶୀତ ବଚନେ ମଧୁ ରସେ ।
ବହିଲା, ପ୍ରଫୁଲ୍ଲ କରି ତନୁଫୁଲ
ପ୍ରଣମି ବୋଲିଲା ଦୋଧୁଳା ଶିରେ
ଭବ ଏ ଅମର ଅତୁଳ । ୨ ।

ଶ୍ରୀରାମ ଅମଳ କମଳ ଚରଣ
ରେଣୁ ଲଭି ବୀର ମସ୍ତକ ।
ବଦଳିଲା ଯଥା ପରଶ ମଣିର
ସ୍ପରଶରେ ଲୌହ କନକ ।
ମଣିଲା, ମାରୁତି ନିଜ ଭୁଜ ବଳ
ଡେଇଁପିବ ନିଶ୍ଚେ ଅପାର ସାଗର
ଉପାଡ଼ି ପାରିବ ଅଚଳ । ୩ ।

ମାରୁତଙ୍କ ଦେଖି ଶ୍ରୀରାମ ଲକ୍ଷ୍ମଣ
ହୃଦେ ମୋଦ ଗଲ ସଞ୍ଚରି,
ବହୁଦିନ ପରେ ନନ୍ଦନ ବଦନ
ଦେଖିଲେ ଜନକ ଯେପରି,
ବସାଇ, ରସାଇ, ମଧୁ ଫଳଚୟ,
ଭାଷିଲା ପାବନି କନିଷ୍ଠ ମାତୁଳ
ସୁଗ୍ରୀବ ମୋର ଦୟାମୟ ! ୪ ।
ମୋ ଜ୍ୟେଷ୍ଠ ମାତୁଳ ବାଲୀ ମହାବଳୀ
କିଷ୍କିନ୍ଧ୍ୟା ପୁର ଅଧୀଶ୍ୱର,
ଯା’ କୋପ ଗମନେ କମ୍ପଇ ବାସୁକି
ତ୍ରାସନ୍ତି ନାଗ, ସୁର, ନର,
ଯା ଭୟେ, ରଖିବାକୁ ନିଜ ଜୀବନ,
ଋଷ୍ୟମୂକ ଗିରି ଦରୀରେ ସୁଗ୍ରୀବ
କରନ୍ତି ତନୁ ଗୋପନ । ୫ ।
ଅଳପ ଦୂରୁଁ ଦେଖନ୍ତୁ ଏ ପ୍ରଭୁ !
ସୁଶୋଭନ ରାଜ ଭବନ,
ଦ୍ୟୁମଣି କିରଣ ଲଭି ମଣିଗଣ
କରୁଛନ୍ତି ଚିତ୍ତ ହରଣ ।
ନଗର, ଦକ୍ଷିଣେ ଯେଉଁ ଉପବନ,
ଉପମା ଦେବାକୁ ନାହିଁ ଅବନୀରେ
ହେଲେ ହୋଇପାରେ ନନ୍ଦନ । ୬ ।
ସେହି ଉପବନେ ରହିଛି ଦୁନ୍ଦୁଭି
ଅସ୍ଥି, ଆବର ସପ୍ତଶାଳ,
ବାଳୀ ମହାବଳ କନକ-କଷଟି
ଅଟେ ସେ ଆନ ବୀରେ କାଳ ।
ସେ ବୀର, ଦୁନ୍ଦୁଭି ଅସ୍ଥିକି ଟେକିବ,
ଏକ ଶରେ ସପ୍ତ- ଶାଳକୁ ଛେଦିବ
ବାଳୀ ସଙ୍ଗେ ଯୁଦ୍ଧ ଇଚ୍ଛିବ । ୭ ।

ତହୁଁ କଛୁ ଦୂରେ ଗିରି ଦରୀ ମଧ୍ୟେ
ଲୁଚି ରହିଛନ୍ତି ସୁଗ୍ରୀବ,
ନିର୍ଭୟ ଏତେକ ବାଳୀ ତହିଁ ଗଲେ
ମୂର୍ଚ୍ଛନା ଫାଟି ପ୍ରାଣ ଯିବ ।
ପୂର୍ବରୁ, ଅଛି ତାହାକୁ ଅଭିଶାପ,
ଆସ ପ୍ରଭୁ ଏହି ବନ ପଥେ ଯିବା
ବଢ଼ ଆସୁଛି ସୂର୍ଯ୍ୟ ତାପ । ୮ ।
ଲକ୍ଷ୍ମଣ ବୋଇଲେ ଦେଖି ଯାଇଥାନ୍ତେ
ବାଳି ରାଜା ରମ୍ୟ ଉଦ୍ୟାନ,
ଅଧୋମୁଖ ହୋଇ ବୋଇଲେ ହନୁମାନ
ଛଡ଼ିବ କାଳେ ଅଭିମାନ
ନିର୍ଭୟେ, ଚାଲ ବୋଲୁ ରଘୁ-ନନ୍ଦନ,
ଅଡ଼ ଅଡ଼ ହୋଇ ପଥ କଢ଼ାଇଲା
ହନୁମାନ ବୀର ବନ୍ଦନ । ୯ ।
ପଥେ ଯାଉଁ ଯାଉଁ ଶତ ଶତ ମୁଖୁ
ଶୁଣିଗଲେ ସୀତାରମଣ,
ବାଳୀ ଅତ୍ୟାଚାର ସହୁଛି ଯା ଧରା
ଉଦେ ହେଉଛନ୍ତି ଜନେ ।
ସିହାଇ, ବଂଶୀ ବାଦରେନ୍ଦ୍ର ବୃଦ୍ଧାରି,
ରବି, ଧବ ନିନ୍ଦା- ବାଦ ଶୁଣି ବୀର—
କର ବକ୍ଷ ହେଲ ବଦଳ । ୧୦ ।
ବାଳୀ ପ୍ରତି କୋପ ଦହି ହୃଦୟାରି
ଉତ୍ତେଜନେ ହେଉ ପ୍ରବେଶ,
ମନେ କଲେ ମୋତେ କିଷ୍କିନ୍ଧାବେଳେ
ଅଛି ଚନ୍ଦ୍ରୁକର ଆଦେଶ,
ଦୁର୍ବଳ ପାଳନ, ଦୁର୍ଜନ ଦଳନ
ନ ବଧିଲେ ବାଳୀ କ୍ଷତ୍ର ଦେହ ପଣେ
ହୋଇବ କାଳିମା ଲେପନେ । ୧୧ ।

ଏତେ ଭଣି ବାଳୀ    ଭୂପ ଉପବନେ
  ଦାଶରଥି କରୁ ବିହାର,
ହନୁମାନ ବୀର    କହିଲ ହେ ଦେବ
  ସପ୍ତଶାଳ ନାମ ଏହାତ,
 ଦୁନ୍ଦୁଭି, ଅସ୍ଥି ଧବଳ ଗିରି ସତ;
ଏହି ଯେ ପୁରତେ    ଦିଶୁଛି ଉନ୍ନତ
  ଗରୁ ସେ ସ୍ୱର୍ଣ୍ଣ ଧାତୁ ଦେ । ୧୨ ।
ସପ୍ତଶାଳ ଶୋଭା    ବିଲୋକି ବିସ୍ମିତେ
  ବୀର ବରାଙ୍ଗଣ ଲକ୍ଷ୍ମଣ;
ବୋଇଲେ ଭୁଜଙ୍ଗ    ଛନ୍ଦେ ଦ୍ରୁମଙ୍କ
  କପରେ ହୋଇବ ଛେଦନ,
 ମଧୁରେ, ହସି ଦୂର୍ବାଦଳ ସୁନ୍ଦର;
ଆସ ବାବୁ ବୋଲି    ଅନୁଜଙ୍କୁ ଡାକି
  ବାହାର କଲେ ତୀକ୍ଷ୍ଣଶର । ୧୩ ।
ଶିଶୁ କ୍ରୀଡ଼ା ନ୍ୟାୟେ    ପ୍ରୟୋଗି ମାର୍ଗଣ
  ଛେଦି ସୁଦୃଢ଼ ସପ୍ତଶାଳ,
ପଦ୍ମରେ ଦୁନ୍ଦୁଭି    ଅସ୍ଥିକି ଫିଙ୍ଗିଲେ
  ଊର୍ଦ୍ଧ୍ୱକୁ ଦଶରଥ ବାଳ,
 ଭୂତଳେ, ଚଣ୍ଡ ବିସ୍ତାରେ ଗର୍ଜନ,
ମହୀଧର ପରେ    ବଜ୍ର ପଡ଼ିଲା କି
  ଭାବିଲେ ପୁରବାସୀ ଜନ । ୧୪ ।
କି ଅଦ୍ଭୁତ ଶବ୍ଦ    ଶୁଭିଲା ପକ୍ଷରୁ
  ଦୂତଙ୍କୁ ବାଳୀ ମହାବୀର,
ଗୁପ୍ତଚର ସେହି —    କଲେ ପରବେଶି
  ଘଷିଲା ନତ କରି ଶିର,
 ମାରୁତି, ସଙ୍ଗେ କେ ବୀର ଦୁଇଜଣ,
ପଦ୍ମରେ ଦୁନ୍ଦୁଭି    ଅସ୍ଥି ଊର୍ଦ୍ଧ୍ୱେ ଫିଙ୍ଗି
  ସପ୍ତଶାଳ କଲେ ଛେଦନ । ୧୫ ।

ବଜ, ନୀଳମଣି          ଶୋଭା ବେନି ତନୁ
ବନୌକା ବେଶେ ଧନୁର୍ଦ୍ଧର,
ଆମ୍ର ଉପବନେ          ନିକ୍ଷଣେ ଭ୍ରମନ୍ତି
ଯଥା ପ୍ରମତ୍ତ କରୀବର,
ଶ୍ରବଣେ, ଗରଜ ବାଳୀ ମହାବଳୀ
ରଦେ ଓଷ୍ଠଭଙ୍ଗି          ଦୀର୍ଘ ଶ୍ୱାସ ଛାଡ଼ି
ଉଠିଲା ଗଦାବର ଧରି । ୧୬ ।
ପଦେ ପଡ଼ି ତାରା          କହିଲା ରଣକୁ
ଯାଅନା ଆଜି ପ୍ରାଣନାଥ,
ଦୂତଠାରୁ ଯାହା          ଶୁଣିଲି ନିଶ୍ଚୟ
ହେବେ ସେ ଜଗତର ନାଥ.
ନ ମାନି, ଦୁର୍ଗ କପାଟ ଫେଡ଼ୁ ବୀର,
ବିକ୍ରମ କେଶରୀ          ବିଦାରି ଦେଲା କି
ବିଶାଳ କରୀବର ଶିର । ୧୭ ।
ରେ ମୂର୍ଖ ପାବନି          ସିଂହ ପୁରେ ଆଣି
ଜମ୍ବୁକ କରାଉ ନର୍ତ୍ତନ,
ଯମପୁରେ ଆଜି          ପଠାଇବି କହି
ଭୀମବେଗେ କରୁ ଗମନ ।
ବିନୟେ, ଭାଷିଲା ବୀର ହନୁମାନ,
କି ଉପାୟ ବାଳୀ          ଯୁଦ୍ଧ ଯାଚା କଲା
ବିପଦ ଦେବ କି ଅଞ୍ଜନ । ୧୮ ।
ବାଳୀ ଗରଜନ          ଶୁଣି ଧନୁଷ୍ପାଣି
ହୋଇବାରୁ ବୀର ଲକ୍ଷ୍ମଣ,
ସାକେତ ସୁନ୍ଦର          ବୀର ପୁରନ୍ଦର,
କରି ମୃଦୁ ହାସ ରଚନ,
ଭାଷିଲେ, ଏହା ସଙ୍ଗେ ଯୁଦ୍ଧ ଆମ୍ଭର,
କି ବୋଲି, ବୋଲିବେ          ଶୁଣି ବୀରଗଣେ
ମଣିବେ ବଡ଼ ଅସୁନ୍ଦର । ୧୯ ।

କହୁଁ କହୁଁ କ୍ରମେ ଝମେ ନିକଟଙ୍କୁ
ଶୁଭ ଆସନ୍ତେ ଗରଜନ,
ପେଷିଲେ ବୀରେନ୍ଦ୍ର ଆକର୍ଷି ଆକର୍ଣ୍ଣେ
ଶବ୍ଦଭେଦୀ ତୀକ୍ଷ୍ଣ ମାର୍ଗଣ,
ବଜ୍ରଳ, ତେଜେ ଭେଦିଲା ବୀରବକ୍ଷ,
ଗରଜି ଭୂବକ୍ଷ ବିଦାରି ଗଡ଼ିଲା
କି ହେଲା ନ କରି ତା ଲକ୍ଷ୍ୟ । ୨୦ ।
କହୁ କହୁଁ ବାଳୀ ବକ୍ଷବିଦ୍ଧ ବାର୍ତ୍ତା
ପ୍ରସରି ଗଲା କିଷ୍କିନ୍ଧାରେ,
ନେତ୍ରୁ ଅଶ୍ରୁ ମୁଞ୍ଚି କିବା ଶତ୍ରୁ ମିତ୍ର
ପରବେଶ ହେଲେ ସେଠାରେ,
ସୁଗ୍ରୀବ, ଶୁଣି ଉଚ୍ଚେ କରି ରୋଦନ,
ଭାଇ ଭାଇ କହି ପଡ଼ିଲା ଭୂମିରେ
ତଥା ସକଳ ପୁରଜନ । ୨୧ ।
ତାରା ମନୋହାରୀ ପୁତ୍ର ସଙ୍ଗେ ଘେନି
କାନ୍ଦେ ହତେ ଶିର କୁଟି,
କହେ ଜୀବଧନ କେଣିକି ଯାଉଛ
ନ ନେଇ ସଙ୍ଗେ ମୋତେ ଛାଡ଼ି,
କ୍ରନ୍ଦନ, ଧ୍ୱନି ହେବାରୁ ଅବଶ୍ୟ
ବୀର ହନୁମାନ ଅନୁଜ ଗହଣେ
ମିଳିଲେ ତହିଁ ଦୟାମୟ । ୨୨ ।
ପୁଷ୍ପବନ୍ତ ତେଜ ବେନି ବୀର ଅଙ୍ଗେ
ଦେଖି ସର୍ବେ ହୋଇ ତନ୍ମୟ,
ଅପଲକ ନେତ୍ରେ ବିଲୋକି ରହିଲେ
କିଏ ଏ ନୋହିବାରୁ ଥୟ ।
ଦଗଧ, ପ୍ରାଣେ ମସ୍ତକେ ଯୋଡ଼ିକର,
ବାଳୀ ବୀର କହେ ଆସ ମୋ ପାଶକୁ
ଆସ ହେ ଅବନୀସୁନ୍ଦର । ୨୩ ।

ବିନା ଅପରାଧେ　　　　　　　ବଧିଲ କାହିଁକି
　　ତୁମ୍ଭେ ତୁହେଁ କାହା ନନ୍ଦନ,
କୁହ ଶୀଘ୍ର ବାରୁ　　　　　　ବେଳୁ ବେଳ ମୋର
　　ଅଥୟ ହେଉଛି ଜୀବନ,
　　ସକଳ　ନେତ୍ରେ ଭାଷିଲେ ରଘୁବର,
ଅଯୋଧ୍ୟା ନରେଶ　　　　　　ଦଶରଥ ସୁତ
　　ଅଟୁ ଆମ୍ଭେ ବେନି ସୋଦର । ୨୪ ।
ପିତା ସତ୍ୟ ପାଳି　　　　　　ପଞ୍ଚବଟୀ ବନେ
　　କରୁଥିଲୁ ଆମ୍ଭେ ବସତି,
ଭାଗ୍ୟଦୋଷେ ପ୍ରିୟ-　　　　　ତମା ବୈଦେହୀଙ୍କ
　　ହରାଇ ଦୁଃଖ ଶୋକେ ଅତି,
　　ବିଜନ,　ଘନବନେ କରୁ ଭ୍ରମଣ,
ବେନିଭାଇ ଆମ୍ଭେ　　　　　　ବରଜନ କରି
　　ବିଷାଦେ ଭୋଜନ ଶୟନ । ୨୫ ।
ପକ୍ଷୀରାଜ ବାର୍ତ୍ତା　　　　　　କହିଲା ସୀତାଙ୍କୁ
　　ରଥେ ନେଇଗଲା ରାବଣ,
ନିର୍ବାଣଙ୍କ ରଷି　　　　　　କପିଲ ଆମ୍ଭଙ୍କୁ
　　କହିଲେ ସେହି ବିବରଣ,
　　ଜାନକୀଙ୍କ　ଉଦ୍ଧାର ଆଶା ପୋଷି ମନେ,
ପଥେ ଆସୁ ଆସୁ　　　　　　ପ୍ରବେଶ ହୋଇଲୁ
　　ତୁମ୍ଭର କିଷ୍କିନ୍ଧ୍ୟା ଭୁବନେ । ୨୬ ।
ଶ୍ରୁତ ଶତ ମୁଖୁଁ　　　　　　ଶୁଣିଲେଟି ବୀର
　　ତୁମ୍ଭର ଘୋର ଅତ୍ୟାଚାର,
ସୁଜନର ଶତ୍ରୁ　　　　　　ଦୁର୍ଜନ ଦୁରନ୍ତ
　　କରି ନେଲୁ ମନେ ବିଚାର ।
　　ଦୁନ୍ଦୁଭି,　ସପ୍ତଶାଳ ଥିଲା ତୁମ୍ଭର
ବୀର ବାହୁବଳ　　　　　　ତୁଳ ପାନ ଶୁଣି
　　ଶଙ୍କା ଉପୁଜିଲା ଆମ୍ଭର । ୨୭ ।

ନିଜ ଭୁଜବଳ ପରଖିଲୁ ମାତ୍ର
ଆଉ ତ କାହ୍ନି ନାହିଁ ଦୋଷ,
ଆମ୍ଭର ବିନାଶ ଆଣେ ଯୁଦ୍ଧଯାତ୍ରା
କଲୁ କାହିଁକି ବହୁ ଚେଷ୍ଟା,
ପ୍ରମାଣ, ମିଳନ୍ତେ ପୂର୍ବ ଦୂଷଣର,
ଦୁର୍ଜନ ଦଳନ କ୍ଷତ୍ରିୟ ଧରମ
ହେତୁ ମୁଁ ପ୍ରୟୋଗିଲି ଶର । ୨୮ ।
ବାଲୀବୀର କହେ ଜାଣେ ମୁଁ ତୁମ୍ଭଙ୍କୁ
ସର୍ବଶଗ୍ୟପନ ଭଞ୍ଜନେ,
ବୀର ପର୍ଶୁରାମ ଦରପ ଦଳିଲ
ଜାନକୀ ମାନସ ରଞ୍ଜନେ,
ଦୋଷୀ ଯେ, ବୁଝି ନ ପାରେ ନିଜ ଦୋଷ,
ହେ ଦେବ ତୁମ୍ଭର ସାଧୁକର୍ତ୍ତବ୍ୟରେ
ଲଭ କଲି ମୁକ୍ତି ସନ୍ତୋଷ । ୨୯ ।
ବୀର ହନୁମାନ ଅଙ୍ଗଦ ସୁଗ୍ରୀବେ
ଅରପି ଅଶ୍ରୁ-ନେତ୍ରେ ବୀର,
ଶ୍ରୀରାମ ଅଭୟ ଚରଣ ଯୁଗଳେ
ଶରାଘାତେ ହୋଇ ଅଧୀର,
କହିଲି, ପ୍ରଭୁ ! ତୁମ୍ଭର ଶ୍ରୀଚରଣ,
ଶରଣ ଏମାନେ ରହିଲେ, କରିବେ
ବହୁବିଧ ହିତ ସାଧନ । ୩୦ ।
ଆବର ଜାମ୍ବବ ସୁଷେଣଙ୍କୁ ଡାକି
ବାଲୀବୀର ଦେଲେ ଆଦେଶ,
ସଦା ଆଜ୍ଞାଧୀନ ଥିବ ଏହାଙ୍କର
ବୀର ନୁହନ୍ତି ଏ ଦେବେଶ ।
ଅନୁଜ, ପୁତ୍ର, ଭାଗିନେୟ, ରମଣୀ
ବଦନେ ଅର୍ପଣ- କରନ୍ତୁ ବୁଲି
ବୋଇଲେ ଉତ୍ତର ରଘୁମଣି । ୩୧ ।

ଘୂର୍ଣ୍ଣି ଘୂର୍ଣ୍ଣି ବାଳୀ ଜୀବନ ପବନ
ମିଶିଗଲା ବାୟୁ ମଣ୍ଡଳେ,
ଚନ୍ଦନ ଇନ୍ଧନ ଘୃତେ ଶବ ଦାହ
ସକଳ କର୍ମ ଶେଷ କଲେ,
ରାମଙ୍କୁ, ରଖାଇ ରମ୍ୟ ଋଷ୍ୟମୂକେ,
ଶତ ଶତ ବୀର ବେଢ଼ି ରହିଥାନ୍ତି
ଶ୍ରୀଚରଣ ସେବା ଉତ୍ସୁକେ । ୩୨ ।

କିଷ୍କିନ୍ଧ୍ୟା ନଗର ନରେଶ ସୁଗ୍ରୀବ
ଯୁବରାଜ ବୀର ଅଙ୍ଗଦ,
ଦ୍ୱେଲେଦ୍ୱେଁ ସେବନ୍ତି ସତତ ସକଳ
ଜଗତ ବରଦ ଶ୍ରୀପଦ,
କେବଳ, ଲଙ୍କା ନଗର ଅଭିଯାନେ,
ସୁଗମ ସରଣି ଚିନ୍ତା କରୁ ସର୍ବେ
ସ୍ଥିର କଲେ ସିନ୍ଧୁ ବନ୍ଧନେ । ୩୩ ।

ଦୁର୍ଜନ ଗଞ୍ଜନ ସଜ୍ଜନ ରଞ୍ଜନ
ଶ୍ରୀରାମ ଧର୍ମପରାୟଣ,
ସରସ ଅନ୍ତର ଭକ୍ତ ସୁଗ୍ରୀବର
ଚରିତ ମାନସ ରଞ୍ଜନ ।
ଅଭୟ, ବରଦା ଶ୍ରୀପଦ ପଲ୍ଲବ ।
କୃପାରେଣୁ ଜନ୍ମେ ଜନ୍ମେ ଲଭକରି
ବିଭବ ନ ଇଚ୍ଛୁ ମାଧବ । ୩୪ ।



## ଦଶମ ସର୍ଗ

### ସସ—ସମବେଶ

ଆସିଲା ବରଷା ନାଶିଲା
ଧରା ଧର ତପନ
ଗ୍ରାସିଲା ଜଳଦ ଦିଶିଲା
ତମୋମୟ ଜଗତ । ୧ ।

ଗର୍ଜିଲା ଭଦୁର ସୃଜଲା
ପ୍ରାଣୀ ହୃଦେ ଚମକ
ବର୍ଜିଲା ଜୀବନ ଅର୍ଜିଲା
ନାମ ବିଶ୍ବ ପାଳକ । ୨ ।

ରଡିଲେ ଶାଳୁରେ ଝଡ଼ିଲେ
ନଭେ ଜ୍ୟୋତିରିଙ୍ଗଣ
ବଢ଼ିଲେ ନଦୀଏ ସଡିଲେ
ପର ଘରେ ଯା ଅନ୍ତ । ୩ ।

ଚଞ୍ଚଳା ଖେଳିଲା ଚଞ୍ଚଳା
ଯଥା କୃଷ୍ଣ ଅଙ୍କରେ
ବହିଲା ପବନ କହିଲା
କାମ ମନ୍ତ୍ର କର୍ଣ୍ଣରେ । ୪ ।

ଭୁବନ ଲଭିଣ ଭୁବନ
ଫଳବନ୍ତ ହୋଇଲା ।
କମଳା ସଦନ ବିମଳା
ନୋହି ମନ ମୋହିଲା । ୫ ।

ସଲିଲେ ଆନନ୍ଦ ସଲିଲେ
ହେଲେ ମୀନ ମକର
ଫୁଟିଲା କଦମ୍ବ ଛୁଟିଲା
ଧରା ତାପ ଜର୍ଜର । ୬ ।

ସ୍ୱାଦୁ ପକ ଫଳ ସେ କାଳେ
ଘେନି ବାତନନ୍ଦନ
ପ୍ରବେଶିଲା ଯହିଁ ବଇସୁ
ରାମ ଶୂର-ବନ୍ଦନ । ୭ ।
ଶୁଣିଲା ହେଉଛି ବଗ୍ୱର
ଘୋର ବର୍ଷା କାଳରେ
ଶୁଭ କର୍ମ ଯାତା ବର୍ଜ୍ଜ
ସୁଗତନ ମତରେ । ୮ ।
ବର୍ଷାକାଳେ ଯନ୍ଦା ନୋହ୍ୱବ
ପ୍ରଭୋ ! ସିନ୍ଧୁ-ବନ୍ଧନ,
ବୋଲେ ହନୁମାନ କରବା
ମାଲ୍ୟବନ୍ତେ ସଦନ । ୯ ।
ନାହିଁ ମନୋହର ଭୂଧରେ
ଖର ବରଷା ଭୟ
କରନ୍ତୁ ସେ ସ୍ଥାନେ ବଇସୁ
ଆଜ୍ଞା ହେ ଦୟାମୟ । ୧୦ ।
ସର୍ବେ ମଣି ତାହା ଉତ୍ତମ
ଘେନି ରାମ ଲକ୍ଷ୍ମଣ;
ତୋଷ ହୃଦେଲେ ଯାଇ ବଲୋକ
ମାଲ୍ୟବନ୍ତ ଶୋଭନ । ୧୧ ।
ଶ୍ୟାମଳ ନବଘନ ଛଦନେ
ତରୁ-ବ୍ରତତୀ-ତତ,
ହୋଇ ଗିରବରେ ଶୋଭିତ
ହରେ ନୟନ ମୂତ । ୧୨ ।
ଗୁଚ୍ଛ କନିଅର କୁସୁମ
ଧରେ କନକ ଶୋଭା
ପୁଷ୍ପିତ କଦମ୍ବ କଦମ୍ବ
କରେ ନୟନ ଲୋଭା । ୧୩ ।

ଝର ଝର ନାଦେ ବହନ୍ତି
ଟିକ ଗିରୁ ନିର୍ଝର
ଆଶୁତୋଷ ଜଟା କଟାହୁଁ
ଗଙ୍ଗାପରି ପ୍ରଖର । ୧୪ ।
ଟେକି ଶବଳିତ କଳାପ
ନାନା ରଙ୍ଗେ କଳାପୀ
ମହୀଧରେ ନୃତ୍ୟ କରନ୍ତି
ଘନ ଜଳଦ ବ୍ୟାପି । ୧୫ ।
ଗିରି ଉପରେ ଖେଳି ଯାଉଛି
ଶୁଭ୍ର ଜଳଦ ମାଳ
ଯମୁନା ବକ୍ଷରେ ବହେ କି
ପୂତ ଜାହ୍ନବୀ ଧାର ? ୧୬ ।
ବେଳେ ବେଳେ ନୀଳ ମୁଦିର
ଚୁମ୍ବେ ଗିରି ଶିଖର
ଇନ୍ଦ୍ର ନୀଳମଣି ମୁକୁଟ
ଦେଲା କି ପୁରନ୍ଦର । ୧୭ ।
ଲଭି ବର୍ଷା ମୁଖ ପବନ
ଗରଜନ୍ତି କୀଚକେ
ଧରି ଦେହୁ ଖରି ଝଡ଼ିଏ
ନବ ଘନ ମେଚକେ । ୧୮ ।
ମହୀଧର ବର ଅଙ୍ଗରେ
ରାଜେ ଦରୀ ନିକର
ବିବିଧ ବରଣ ପାଷାଣେ
ହୋଇ ସୁମନୋହର । ୧୯ ।
ସୁଧାକର ବଳି ମସୃଣ
ଦରୀ ପୁର ପାଷାଣ
ବିଶ୍ୱ-ଶିଳ୍ପୀ କରେ ଯତନେ
କରିଛି କି ନିର୍ମାଣ । ୨୦ ।

ଦଶ ଦ୍ୱାର ଥାନ୍ତି ଆବୋର
　　　　ନାନା ରଙ୍ଗ ପୁଷ୍ପିତା-
ଲତା ମାଳ, ଚେଲ ପରଦା-
　　　　ବଢ ହୋଇ ଶୋଭିତା । ୨୧ ।

ଧରାଧର ଦର ଗଗନେ
　　　　ଉଦେ ରାମ ଲକ୍ଷ୍ମଣ
ହୋଇ କଲେ ଋକ୍ଷ କପିପ
　　　　ମୋଦ ସିନ୍ଧୁ ବର୍ଦ୍ଧନ । ୨୨ ।

ମହୀ ସୁର ଉଗ୍ର ପ୍ରତାପ
　　　　ନାଶ କରିବା ପାଇଁ,
କୁମୁଦେ କରନ୍ତି ରଞ୍ଜନ
　　　　କର ପ୍ରଭା ଦେଖାଇ । ୨୩ ।

ଗୃହୁଁ ଗୃହୁଁ ଅନ୍ତ ହୋଇଲା
　　　　କ୍ରମେ ବରଷା କାଳ
ସାଜି ସୈନ୍ୟ ସିନ୍ଧୁ ବନ୍ଧନେ
　　　　ଦାଶରଥି ବାହାର । ୨୪ ।

ରତ୍ନାକର ବେଳା ସୈକତେ
　　　　ବୀର ସାକେତବର
ଉଟଜ ନିର୍ମାଣେ ସଇନେ
　　　　କରାଇଲେ ତତ୍ପର । ୨୫ ।

ଶବଶକ୍ତିମୟ ଆଦେଶେ
　　　　କଲେ ଆରମ୍ଭ ସେତୁ
ସବନୟେ କହେ ମାଧବ
　　　　ବୁଧେ ବୁଝିବେ ହେତୁ । ୨୬ ।



# ଏକାଦଶ ସର୍ଗ

(ସ୍ୱର— ରଙ୍ଗକେଳି)

ଇନ୍ଦୁ କୋଜାଗର ନିଶି ମୁଖରେ
ପ୍ରାଚୀବାରେ ଗ୍ରହିଁ କବ ସୁଖରେ । ୧ ।

ବସି ବଳେଲୁ ବାରୁଣୀରେ ରବ
ଧର ଲଭିଲେ ଧରି ରଙ୍ଗ ଛବ । ୨ ।

ଥିଲା ବାରିଦ ପଶ୍ଚିମାକାଶରେ
ହେଲା ଆରକ୍ତ-ବର୍ଣ୍ଣ ବିଶେଷରେ । ୩ ।

ରଙ୍ଗମୟ ଦିଶିଲା ଚରାଚର
ଶ୍ୟାମ, ଶ୍ୱେତ, ପୀତବର୍ଣ୍ଣ ନିକର । ୪ ।

ସିନ୍ଧୁବେଳା ଘୋରବନ ଭୂଧର
ରକ୍ତ ବରନେ ଦିଶିଲେ ସୁନ୍ଦର । ୫ ।

ସିନ୍ଦୂର କି ହୋଇଛନ୍ତି ଭୂଷଣ
ଶୈଳରାଜ ମସ୍ତକ ଶିଳାଗଣ । ୬ ।

ସିନ୍ଧୁ ଉତ୍ତର ଦିଗେ ରମ୍ୟ ନଦେ
ହଂସ, ହଂସୀ ସନ୍ତରନ୍ତି ଆନନ୍ଦେ । ୭ ।

ମତ୍ତଭୃଙ୍ଗେ କୁମୁଦେ ଆଶା କରି
ବାରି ନ ପାରି ଚୁମ୍ବୁଛନ୍ତି ବାରି । ୮ ।

ହେଲେ ହୃଷ୍ଟ ପଶୁ ପକ୍ଷୀ ନିକର
ଗ୍ରହିଁ ନିଜ ତନୁ ନବ ସୁନ୍ଦର । ୯ ।

କାଶ ଅପଘନ କରି ଲୋକନ
ସବେ କେ ଦେଲା କୌଶେୟ ବସନ । ୧୦ ।

ବାରିନୁହେ ଦନ୍ତାଧର ବରନ,
କିଏ କହ୍ଲାର କିଏ କୁଞ୍ଜବନ । ୧୧ ।

ସେହି କାଳେ ଉଦିଲେ ଶଶଧର
ସଙ୍ଗେ ରଙ୍ଗେ ଯେନ୍ମ ପ୍ରିୟା ନିକର । ୧୨ ।

ସୁଦୋଦୟ ଏପରି କଲ୍ୟକର ।
ହେଲା ବିଲୋକି ଗଗନ ସୁନ୍ଦର । ୧୩ ।

ନୀଳ କାକଟେ ଅବା ବେଦମୁଖ
ଷଷ୍ଠପଣ ଲେଖନ୍ତି ଲଭି ସୁଖ । ୧୪ ।

ଚନ୍ଦ୍ର ରଜତ ଅସିତ ପାତ୍ରରେ ।
କର କଲମେ ଧାଡ଼ା ଚନ୍ଦ୍ରକରେ । ୧୫ ।

ଝାଡ଼ହୋଇ କଲମ ଲକ୍ଷ୍ମୀଗଣ
ଦିଶେ ଦିଶେ ଦିଶିଲେ ସୁଶୋଭନ । ୧୬ ।

ଯହିଁ ବନ୍ଧୁତ ତପନ ଅସିତ ।
ଶୁଦ୍ଧ ବୃହସ୍ପତି କାନ୍ତି ଦୀପିତ । ୧୭ ।

ଶୁକ୍ଲଖଣ୍ଡ ବାରଦ ଶୋଷକରେ
ଲୁପିହୁଏ ଅସିତ ଶୋଷଣରେ । ୧୮ ।

ବିଧୁ ଉଜ୍ଜ୍ୱଳ କୀର୍ତ୍ତି ଦେଖି ମହୀ
ମହୋଜ୍ଜ୍ୱଳ ଶୁକ୍ଲମା ବିକାଶଇ । ୧୯ ।

ରମ୍ୟନଦ ଦରପଣ ରୂପକୁ,
ଧରି ଚନ୍ଦ୍ରିଲା ଯଶ ଲୋକନକୁ । ୨୦ ।

ଧନ୍ୟ ଶରଦକାଳ ରମଣୀୟ
ସର୍ବମାନସ କରେ ସ୍ପୃହଣୀୟ । ୨୧ ।

ଗ୍ରହିଁ ସିନ୍ଧୁ ମହୋଜ୍ଜ୍ୱଳ ନନ୍ଦନ
ହୋଇ ଉଠିଲା ଆନନ୍ଦ ବର୍ଦ୍ଧନ । ୨୨ ।

ଅଙ୍କେ ଧରି ଆଣିବାକୁ କୁମର
ବଢ଼ାଇଲା ସହସ୍ର ବୀଚିକର । ୨୩ ।

ତୁଙ୍ଗ ଗଗନେ ନ ପାଇ ତ ଙ୍କର
ଅଧୋଗତି କରଇ ନିରନ୍ତର ।୨୪ ।

ବାଣ୍ଟୁ ଦିଏ କି ରୌପ୍ୟ ମୁଦ୍ରା କରେ
ଚୁମ୍ବି ପୁତ୍ରବଦନ ଆନନ୍ଦରେ । ୨୫ ।

ବେଲୁନବଲ କରି ଘୋର ଗର୍ଜନ
ଡାକେ ଆସ ମୋ କୋଳେ ବାପଧନ । ୨୬ ।

ଖାଟ କରେ ପୋତ ମାଳା ହଲାଇ
ଦିଏ କ୍ରୀଡ଼ନକ ପରି ଦେଖାଇ । ୨୭ ।

ରଘୁପତି ଆଦେଶେ ସୈନ୍ୟଗଣ
କରୁଅଛନ୍ତି ସାଗର ବନ୍ଧନ । ୨୮ ।

ବଡ଼ ବଡ଼ ଶିଳା ହେଲେ ପତନ
ପୁତ୍ରମଣି ତା, କରେ ଆଲିଙ୍ଗନ । ୨୯ ।

ପୁତ୍ର ନ ପାଇ ନିଶ୍ୱାସ ତାହାର
ଉର୍ଦ୍ଧ୍ୱେ ଉଠଇ ବୁଦ୍‌ବୁଦ ଆକାର । ୩୦ ।

ବ୍ୟସ୍ତ ହୋଇଛନ୍ତି ରାମ ଲକ୍ଷ୍ମଣ
ଶୀଘ୍ର ଚାଲିଛି ସାଗର ବନ୍ଧନ । ୩୧ ।

ସିନ୍ଧୁ ପାଶରୁ କ୍ରୋଶ ଏକଶତ
ପରଯନ୍ତେ ନ ରହିଲ ପର୍ବତ । ୩୨ ।

ମହାବଳୀ କିଷ୍କିନ୍ଧା ପୁରବାସୀ
ରାମଚନ୍ଦ୍ରଙ୍କ ସଙ୍ଗେ ଛନ୍ତି ଆସି । ୩୩ ।

ତାଙ୍କ ସଙ୍ଗେ ବନଜୀବ ନିକର
ସେତୁବନ୍ଧ କାମରେ ତତପର । ୩୪ ।

କୋଟି କୋଟି ମହାବଳୀ ବାନରେ
ବହି, ପକାନ୍ତି ପ୍ରସ୍ତର ସାଗରେ । ୩୫ ।

ବନ ମତ୍ତ ବାରଣେ ଦାନ୍ତ-କରେ
ଶିଳା ଉପାଡ଼ନ୍ତି ଚଢ଼ି ଭୂଧରେ । ୩୬ ।

ନଖ ଶସ୍ତ୍ରେ ଭଲ୍ଲୁକେ ଶିଳା ତରୁ
ଅବିଶ୍ରାମେ ଯାଉଛନ୍ତି ଉପାଡ଼ି । ୩୭ ।

ବୃକ୍ଷବରନ ମଣ୍ଡପ ଆକାର
ହେଲେ କଚ୍ଛପେ ସାଗରୁ ବାହାର । ୩୮ ।

କେତେ ଆସିଲେ କଏ କହେ ଅନ୍ତ
ଲୁଚିଗଲା ସିନ୍ଧୁବେଳା ସିକତ । ୩୯ ।

ବହୁ ଆସନ୍ତେ କଚ୍ଛପେ ପ୍ରସ୍ତର
ଅବା ଗୁଳିଲେ ଖଣ୍ଡ ମହୀଧର । ୪୦ ।

ଗଦାଘାତେ ଅଙ୍ଗଦ ହନୁମାନ
ଭାଙ୍ଗି ଆଣନ୍ତି ବଡ଼ ସାନୁମାନ । ୪୧ ।

ପୁଣି ବାରୁଦ ଶସ୍ତ୍ରେ ନୀଳ, ନଳ
ଭାଙ୍ଗି ପକାନ୍ତି ଦୃଢ଼ ଗିରିବର । ୪୨ ।

ସୈନ୍ୟ ପଦାଘାତେ ରତ୍ନାକର
ଗ୍ରାସିଥାଏ ନଭ, ନିଶା, ବାସର । ୪୩ ।

ରବି ଦିବସ ବନ୍ଦେ କଳକର—
କରି ଦିଶଇ ନାହିଁ ମନୋହର । ୪୪ ।

ବହୁଦିନ ସାଗର ସେତୁ ଶେଷ—
ହେବା, ରାମ ତୁଷ୍ଟ ହେଲେ ଅଶେଷ । ୪୫ ।

ସେତୁ ଉପରେ ହର୍ଷେ ସୈନ୍ୟଗଣ
କଉତୁକେ ଆରମ୍ଭିଲେ ଭ୍ରମଣ । ୪୬ ।

ଫଳ ସିଦ୍ଧି ହେଲେ ଯଥା ପରାଣୀ
କର୍ମ ଶ୍ରମକୁ ନ ପାରନ୍ତି ଜାଣି । ୪୭ ।

ସେତୁ ସାଗରେ ମହାଶକ୍ତି ଧରି
ଶୋଭା ପାଇଲା ହିମାଚଳ ପରି । ୪୮ ।

ଆରମ୍ଭିରୁ କରିବାକୁ ଭଗନ
ଭୂମି-କୋଷ କଲା ବହୁଯତନ । ୪୯ ।

ଶେଷେ ଦେଖିଲା ମାନଦଣ୍ଡବତ
ସେତୁ ମୋ ବକ୍ଷେ ରହିବ ସନ୍ତତ । ୫୦ ।

ଧିକ ମୋ ନାମ ରତନ ଆକର
ଧିକ ଅପାର ଅନନ୍ତ ସାଗର । ୫୧ ।

ଏତେ ହୃଦ୍‌ଗତ ବହ୍ନି ମନେ ରୋଷ
ବଶ୍ୟ ଗରସି ରୂପେ କଲା ଘୋଷ । ୫୨ ।

ପୂର୍ବ ପଶ୍ଚିମ ଦିଗୁ ଗିରିପରି
ଧାଇଁ ଆସିଲେ ଅସଂଖ୍ୟ ଲହରୀ । ୫୩ ।

ସେତୁବନ୍ଧ କରିବାକୁ ଭଞ୍ଜନ
ଦିବା ରାତ୍ର ଧାବନ୍ତ ଘନଘନ । ୫୪ ।

ବେଳା ପାର୍ଶ୍ୱେ ବେଗେ ହୋଇ କମ୍ପିତ
ଲଙ୍କାବଣେ ପଳାନ୍ତ ଗର୍ଜିତ । ୫୫ ।

ପୁଣି ଗରବେ ଗରଜି ଆସନ୍ତ
ସେତୁ ଉପରେ ବାଜି ବାହୁଡନ୍ତ । ୫୬ ।

ପାରାବାର ପ୍ରବଳ ମହାବଳ
ସେତୁ ସଙ୍ଗେ ରଣେ ହେଲା ବିଫଳ । ୫୭ ।

ମଣି, ମୁକ୍ତା, ବିଦ୍ରୁମ ହାତ କରେ—
ଅର୍ପି, ନମିଲା ଶ୍ରୀରାମ ପଦ୍ମରେ । ୫୮ ।

ରାମଚନ୍ଦ୍ରଙ୍କ ଅଦ୍ଭୁତ କରଣୀ
ଯଶ ବ୍ୟାପିଗଲା ସାରା ଧରଣୀ । ୫୯ ।

ମୁକ୍ତ କଣ୍ଠେ ଗାନକଲା ସଂସାର
ଧନ୍ୟ ଭାରତ ସପ୍ତଦ୍ୱୀପ ସାର । ୬୦ ।

ଧନ୍ୟ ତୁହି ମା ! ଭାରତ ଜନନୀ
ବିଶ୍ୱବିଜୟୀ-ବୀର-ପ୍ରସବିନୀ । ୬୧ ।

ଧନ୍ୟ ଭାରତ ତବ ସ୍ୱର୍ଗପଦ
ତୁହି ସକଳ ଜଗତ ସମ୍ପଦ । ୬୨ ।

ଯୁଗେ ଯୁଗେ ମା ! ତୋହର ନନ୍ଦନ
ହୋଇ ଆସୁଛନ୍ତ ବିଶ୍ୱ-ବନ୍ଦନ । ୬୩ ।

ତୋ ବିହୁନେ ଭାରତ ! କା ନନ୍ଦନ
କରିପାରିବ ସାଗର ବନ୍ଧନ । ୬୪ ।

ହୋଇ ନାହିଁ ହେବ ନାହିଁ ଜଗତେ
ପଞ୍ଚ ମହାଭୂତ ଥିବା ପର୍ଯ୍ୟନ୍ତେ । ୬୫ ।

ଧନ୍ୟ ଭାରତ ରତନ ଗରଭା
ସୂର୍ଯ୍ୟ ସମ ତୋ ନନ୍ଦନ ପରଭା । ୬୬ ।

ରତ୍ନପୂରିତ ମହୀଧର ଜାଲ
ତୋର ବକ୍ଷେ ରାଜନ୍ତି ମାଳ ମାଳ । ୬୭ ।

ଶସ୍ତ୍ର ଶାସ୍ତ୍ର କଳା ବିଦ୍ୟା ନିପୁଣ
ଯୁଗେ ଯୁଗେ ମା ! ତୋର ପୁତ୍ରଗଣ । ୬୮ ।

ଯେଣୁ ତୋର ଉତ୍ତମାଙ୍ଗ ଉତ୍କଳ
ନାମ ବହୁଛି ଭୁବନ ବିରଳ । ୬୯ ।

ତୋର ସିନ୍ଧୁ ନାମ ମହାସାଗର
ଭାଷା ସଂସ୍କୃତ ଅଟଇ ତୋହର । ୭୦ ।

ତୋର ପର୍ବତ ନାମ ହିମାଳୟ
ଲୋକେ କହନ୍ତି ଯାହା ସୁରାଳୟ । ୭୧ ।

ଗୀତ ଅଟଇ ତୋ ଦେଶରେ ବେଦ
ସହଜରେ ନ ମିଳେ ଯାର ଭେଦ । ୭୨ ।

ମନ୍ତ୍ର ଗାୟତ୍ରୀ ମା ! ତୋର ଦେଶରେ
ଗାନେ ମହାପାତକ ନାଶ କରେ । ୭୩ ।

ତୋର ବରପୁତ୍ର ଦେବ ବ୍ରାହ୍ମଣ
କରିପାରନ୍ତି ଅସାଧ୍ୟ ସାଧନ । ୭୪ ।

ବୃହସ୍ପତି ପଣ୍ଡିତ ବ୍ୟାସ କବି,
କୀର୍ତ୍ତି ବିରାଜେ ଯଥା ନବ ରବି । ୭୫ ।

ତୋର ପୁତ୍ର ମା ! ବୀର ଭୃଗୁରାମ
ନୃପ ତିଳକ ଗୁଣାରାମ ରାମ । ୭୬ ।

ତୋ ଦେଶର ଆରାଧ୍ୟା ଦେବୀ ଶକ୍ତି
ନାମ ସ୍ମରଣେ ନ ଥାଏ ଦୁର୍ଗତି । ୭୭ ।

ସୁର ନଦୀ ମା ! ରଜେ ତୋର ଅଙ୍ଗେ
ପାପ ତାପ ହରେ ଯାହା ତରଙ୍ଗେ । ୭୮ ।

କୋଟି କୋଟି ମା ! ତୋହର ନନ୍ଦନ
ସଦ୍‌ଗୁଣ ରତନ ନିକେତନ । ୭୯ ।

ମା ଗୋ ତୋ ଦେଶର କବି ପଣ୍ଡିତ
ଯଶରାଶି ସ୍ୱର୍ଣ୍ଣାକ୍ଷରେ ରଞ୍ଜିତ । ୮୦ ।

ଶିଳ୍ପ କୌଶଳେ ବୀରବର ନଳ
କଲେ ସେତୁ ବନ୍ଧକୁ ମନୋହର । ୮୧ ।

ବନା ସିକତା ଅର୍ଜୁନେ ଚକ୍ଷୁଣ
ହୋଇ ମୋହିଲା ଦର୍ଶକ ନୟନ । ୮୨ ।

ସେତୁ ଶୋଭା ଗୃହିଁ ବୀର ବନ୍ଦନା
ରାମ ପାଶେ ରହିଲେ ସୈନ୍ୟଗଣ । ୮୩ ।

ହେବ କି ଆଜ୍ଞା ବୋଲି ଖରତରେ
ବେଢ଼ି ବସିଗଲେ ଚଉପାଶରେ । ୮୪ ।

ସେତୁ ପରେ ଗୃହିଁ ସୈନ୍ୟମଣ୍ଡଳ
ତୋଷ ହୋଇଲେ ବୀର ଆଖଣ୍ଡଳ । ୮୫ ।

ଲକ୍ଷ ସଂଖ୍ୟକ ଅନୁଗତ ନର
ଋକ୍ଷ ଗଜ ନାନାବିଧ ବାନର । ୮୬ ।

ଉଭା ହୋଇ ବଲଛଲେ ବଚନ
ସୁମଧୁରେ ସଜ କଞ୍ଜଲୋଚନ । ୮୭ ।

ଆର୍ଯ୍ୟ ସଂସ୍କୃତ ଭାରତେ ଆମ୍ଭର
ଧର୍ମ ପଦ୍ମପୂର୍ଣ୍ଣ ପ୍ରାଣୀ ନିକର । ୮୮ ।

ବ ସ ସଦ୍ଧର୍ମ ତଡ଼ାଗ ନିର୍ମାଣ
ଶେଷେ ହୁଅଇ ପ୍ରତିଷ୍ଠା ବିଧାନ । ୮୯ ।

ସେତୁ ନିର୍ମାଣ ଆମ୍ଭ ପକ୍ଷେ ତଥା
ଏହା ପ୍ରତିଷ୍ଠା ହୋଇବାର କଥା । ୯୦ ।

କାହୁଁ ପାଇବା ବନବାସେ ଧନଂ
ବେଦମତେ ଶତ୍ରୁ ଆୟୋଜନ । ୯୧ ।

ପଞ୍ଚ ପ୍ରତିଷ୍ଠା ଧର୍ମକର୍ମମାନ
ଅଙ୍ଗହାନି ହୋଇବା ଅବଧାନ । ୯୨ ।

ଏକେ ଆମ୍ଭର ସଙ୍କୋଚିତ କର୍ମ,
ବୁଦ୍ଧେ ପବନ ହଂସ ବଂଶ ଧର୍ମ । ୯୩ ।

କର୍ମଯାଗ ଦେବିନାଗୁଣ ଦକ୍ଷିଣା,
ପୁଣି ନିଷେଧ ସଧର୍ମିଣୀ ବିନା । ୯୪ ।

କରଣୀୟ ତ ନୁହେ ପରଧନେ,
ବୃଥା ଆଶା ପୋଷିବା କିଆ ମନେ । ୯୫ ।

ବନେ ଭରମି ଫଳମୂଳ ଆଣ
ବନ ଭୋଜୀଏ କରିବା ନିର୍ମାଣ । ୯୬ ।

ବସ୍ତ୍ର ଅଭାବେ ସୂତ୍ର ଦେଲ୍ଲ ପର,
ସେତୁବନ୍ଧ ପ୍ରତିଷ୍ଠା ଏ ଆମ୍ଭର । ୯୭ ।

ବନଜୀବଙ୍କୁ କର ନିମନ୍ତ୍ରଣ,
ସେତୁ ଉପରେ କରାଅ ଭୋଜନ । ୯୮ ।

ସଭା ମଧ୍ୟେ ରାମଚନ୍ଦ୍ର ବଚନ,
ସବେ କର ନ ପାରିଲେ ଶ୍ରବଣ । ୯୯ ।

ପ୍ରଭୁ ନିର୍ଦ୍ଦେଶ ଶ୍ରବଣ ସ୍ୟନ୍ଦନେ,—
ବସି, ଭ୍ରମିଲ ସଭା ମଧ୍ୟେ ଘନେ । ୧୦୦ ।

ଶୁଣି ସାବରେ ହେଲେ ବନେ ବାହାର,
ରାମ ଚରଣେ କରି ନମସ୍କାର । ୧୦୧ ।

ସେନାଗଣ ସଙ୍ଗେ ରାମ ଲକ୍ଷ୍ମଣ,
କରୁଥାନ୍ତି ସିନ୍ଧୁଶୋଭା ଦର୍ଶନ । ୧୦୨ ।

ସ୍ୱସ୍ଥାପିତ ରାମେଶ୍ୱରଙ୍କ ଆଗେ
ଫଳମୂଳ ଠୁଳ କଲେ ସରାଗେ । ୧୦୩ ।

ସଦାଶିବେ କରି ତାହା ଅର୍ପଣ ।
ପ୍ରଣମିଲେ ଶ୍ରୀରାମ ସୈନ୍ୟଗଣ । ୧୦୪ ।

ଲଗିଗଲା ବନଭୋଜୀ ଉତ୍ସବ
ବୃନ୍ଦ ତୁଷ୍ଟ ହେଲେ ବୀର ରାଘବ । ୧୦୫ ।

ବହୁ ସଂଖ୍ୟାରେ କରନ୍ତି ଭୋଜନ
ହର୍ଷେ କରନ୍ତି କେ ପରିବେଷଣ । ୧୦୬ ।

ଶେଷ କରି ବନଭୋଜୀ ସମ୍ଭାର
ଲଙ୍କା ନଗରେ ହୋଇଲେ ବାହାର । ୧୦୭ ।

ନମି ଶ୍ରୀରାମ ଅଭୟ ଚରଣେ,
ବନେ ଫେରିଲେ ବନଜୀବଗଣେ । ୧୦୮ ।

ତଥା କଚ୍ଛପେ ପଶିଲେ ସାଗରେ
ପୂତ ରାମ ନାମ ଜପି ଅନ୍ତରେ । ୧୦୯ ।

ରଣଦକ୍ଷ ବୀରେ ଲଙ୍କା ନଗରେ
କଲେ ଅଭିଯାନ ସେତୁ ପଥରେ । ୧୧୦ ।

ଜୟ ଜୟ ମା କେଶରୀ ଆସନା
ପୂର୍ଣ୍ଣ କର ମାଧବର କଳ୍ପନା । ୧୧୧ ।



## ଦ୍ୱାଦଶ ସର୍ଗ

ପଦ—ବଳହଂଷ ବେଢାର

ପ୍ରବେଶ ହେଉଁ ଆସି ଶିଶିର କାଳ
ରୁକ୍ଷ ଦିଶନ୍ତି ବନ, ଭୂଧର ମାଳ
କ୍ରମେ ହୋଇ ଯାଉଛି ରସା ନୀରସା
ବାର୍ଦ୍ଧକ୍ୟେ କମେ ଯଥା କାମ ଲଲସା, ଯେ । ୧ ।

କ୍ରମେ କମୁଛି ନଦୀ ସରସୀ ଜଳ
ରୋଗ ସନ୍ତାପୁ ଯଥା ମାନବ ବଳ
ଦହଇ ସବୁ ମନୋହର କମଳ
ଅଭାବ ଯଥା ଗୁଣୀ ଗୁଣ ସକଳ, ଯେ । ୨ ।

ବିଷ ମଣନ୍ତି ପ୍ରାଣୀ ଜଳ ପବନ
ବୈରାଗ୍ୟ ଭକ୍ତେ ଯଥା ଆତ୍ମୀୟ ସ୍ୱଜନ
ଶିଶିର କୃଷିକ୍ଷେତ୍ର ଲୋଡ଼ନ୍ତି ଜଳ,
ଭୃତ୍ୟର ଯଥା ପ୍ରଭୁ-ଧନ ସମ୍ବଳ ଯେ । ୩ ।

କଞ୍ଚୁକ ବରଜିଲେ କଞ୍ଚୁକୀମାନେ
ଗୃହ-ଧନ-ସୌଭାଗ୍ୟ ଯୋଗୀ ସମାନେ
ସପଲ୍ଲବା କେବଳ ଆତୁଣ୍ଡି ବନେ
କୁଳଟା ଯଥା ଜାର ପୁଂସ ଦର୍ଶନେ, ଯେ । ୪ ।

ଡ଼ୁବୁ ଡ଼ୁବ କାନନେ ଫୁଟିଲ ଫୁଲ
କ୍ରୂର ଗୁଣରେ ଯଥା ନ ଥାଏ ମୂଲ୍ୟ
ପଙ୍କିଲ ଭୂମି ହୋଇଯାଏ କର୍କଶ
ଖଳ ମାନବେ ଯଥା ସୌହାର୍ଦ୍ଦ୍ୟ ଯଶ ଯେ, । ୫ ।

କୃଷକ ପକ୍ୱଧାନ୍ୟ ଭକ୍ଷିଲେ କସ୍ରି
ଦୁର୍ବଳ-ଜନ-ଧନ ଖଳଙ୍କ ପରି

ଅନ୍ନପରେ ବିବିଧ ବ୍ୟଞ୍ଜନ ଦାନ
କଲେ ଧରଣୀ ରାଣୀ ମାତା ସମାନ, ଯେ । ୬ ।

ଇକ୍ଷୁଦଣ୍ଡ ହୋଇଲେ ଯନ୍ତ୍ରେ ପେଷଣ
କରେ ଜୀବନ ନାନା ଦ୍ରବ୍ୟେ ପୋଷଣ
ହସନ୍ତୀର ଆଶ୍ରୟ ନେଲେ ନାରଦ
ଅଘନାଶନ ପଦେ ଯଥା ନାରଦ, ଯେ । ୭ ।

ବୀର ଶ୍ରୀରାମଚନ୍ଦ୍ର ସୈନ୍ୟ ନିକର
ଲଙ୍କାଭିଯାନେ ହୋଇ ହରଷଭର
ଯ୍ରାପନ୍ତ୍ର ସମାନ ସଇନ ଚଢ଼
ବିବିଧ ରଙ୍ଗେ କରୁଛନ୍ତି ଗଢ଼, ଯେ । ୮ ।

ସଚିତ ସେନା ସଙ୍ଗେ ରାମ ଲକ୍ଷ୍ମଣ
ଚଳେ ଗୁଲନ୍ତି ଧରି ସିଂହ ଲକ୍ଷଣ
ତୂଣୀର ସ୍କନ୍ଧେ ଧରି ଧନୁଷ କରେ
ବିଶ୍ୱବିଜୟୀ ତେଜ ବହ୍ନି ଅଙ୍ଗରେ, ଯେ । ୯ ।

ମଣି, ବିଦ୍ରୁମ, ମୁକ୍ତା ସୁନ୍ଦର ଦର
ସହସ୍ର ବୀଚି କରେ ରତ୍ନ ଆକର
ସୁଦୂ ବେଳା ପାରୁଛେ ଦଅଇ ବାଞ୍ଛ
ବାୟୁ ସଙ୍ଗୀ ତରଙ୍ଗେ ସଲିଳ ସିଞ୍ଚ, ଯେ । ୧୦ ।

ଉର୍ମି ଉର୍ମିଙ୍କଲଙ୍କୁ ଲହରୀ କରେ
ଉର୍ଦ୍ଧ୍ୱଙ୍କୁ ଠେକି ଦିଏ ସେତୁ ପାଶରେ
ରାଜମୁକୁଟ ରାମ ବୀର ଈଶ୍ୱର
ଯାହା ମଙ୍ଗଳ ହେବ ବୋଲି ସାଗର, ଯେ । ୧୧ ।

ମଣ୍ଡିଲେ କେତେ ବୀରେ ରତ୍ନ ଭୂଷଣେ
କେହୁ ପ୍ରବାଳେ କେହୁ ଶଙ୍ଖ ବାଦନେ
ଫୋପାଡ଼ନ୍ତି କେ ଶିଳ ଧରି ସାଗରେ
ଗୁର୍ଣ୍ଣି ବିକଟ ବପୁ ଉର୍ମି ଉପରେ, ଯେ । ୧୨ ।

ତୁଙ୍ଗ ବଳେକ ସୁବଳସ୍ଥା ପର୍ବତ-
ଶିଖର ଶୋଭା, ଶୁଦ୍ଧ ରଜତ ବତ
ଜମ୍ବୁ ଶ୍ରୀରାମ ଶବ୍ଦେ ଧରା କମ୍ପାଇ
ସିଂହଳ ଦ୍ୱୀପେ ସସୈନ୍ୟେ ମିଳିଲେ ଯାଇ, ଯେ । ୧୩ ।

ଭୂଧର ପାଦଦେଶେ ରସାଳ ବନ
ପୂଗ ତାଳ, ତମାଳେ ହୋଇ ଶୋଭନ
ଆକର୍ଷି ନେଇ ରାମଚନ୍ଦ୍ରଙ୍କ ମନ
ସସୈନ୍ୟେ ପ୍ରବେଶିଲେ ତହିଁ ବହନ, ଯେ । ୧୪ ।

ଲଙ୍କା ନଗର ମୁଖ ପର୍ବତ ଶୋଭା
ଯହିଁ ଚକିତେ ସର୍ବେ ହୋଇଲେ ଲୋଭା
ବକୁଳ, ନାରିକେଳ, କଦମ୍ବ ବନ
ସପୁରି, କଦଳୀ କେ କରେ ଗଣନ, ଯେ । ୧୫ ।

ନିମ୍ବ ପାଦପ ମୂଳେ ମଣ୍ଡପ ଚୟ
ବିବିଧ ବର୍ଣ୍ଣଧର ମୋହେ ହୃଦୟ
କେହୁ ମଣ୍ଡପ ଦିଶେ ବିଦ୍ରୁମ ବତ
କେ ହୀରା, କନକ, ବା କେହୁ ରଜତ, ଯେ । ୧୬ ।

ଭୂଧର-ବର ଶିରୁ ନିର୍ମଳ ଝର
ଜଳେ ସଂପୂର୍ଣ୍ଣ କରି କୁଣ୍ଡ ନିକର
ଝର୍ଝର ନାଦେ ବହି ପାଦ ଦେଶରେ
ଲଭନ୍ତି, ରତ୍ନାକର ନଦୀ ରୂପରେ, ଯେ । ୧୭ ।

ପଡ଼ି ଆସୁଛି ଅସ୍ତ ରବି କିରଣ
ସସୈନ୍ୟେ କଲେ ରାମ ଧରା ରୋହଣ
ଗିରି ଶିଖେ ଦେଖିଲେ ଅସଂଖ୍ୟ ଦଶା
ଯତନ ସ୍ଥାନ ରାଜଭବନ ପରି, ଯେ । ୧୮ ।

ଭୂଧରେ ଥାଇ ସର୍ବେ କରନ୍ତି ଲୋକନ
ପୂର୍ବେ ଦିଶିଲା ରମ୍ୟ ରାଜଭବନ

ସୁନ୍ଦର ରବି ସ୍ୱର୍ଣ୍ଣ କିରଣ ବାଙ୍କ
ଝଟକୁଥାଏ ପୁରି ରତନ-ସାଜ, ସେ । ୧୯ ।

ଉତ୍ତର ଦିଗେ ସିନ୍ଧୁ କରେ ଗର୍ଜନ
ଗୃହ୍ମଁ ଅସ୍ତ ତପନ ରଙ୍ଗ ବରଣ
ଲହରୀ କରତୋଳି ରବି ଚରଣେ
ପ୍ରଣାମ କଲି ପରି ଆସଇ ମନେ, ସେ । ୨୦ ।

ବାରୁଣୀ ଦିଗେ ମହୀଧର ପାଶରେ
ଅନାବିଲ ସଲିଳ ବିରାଟ-ସରେ
ସଜୀବ ସ୍ନାନ ହୋଇ ଦିଶେ ଶୋଭନ
ବିଦ୍ୟା ବିହୀନ ଧନପତି ଯେସନ, ସେ । ୨୧ ।

ଦକ୍ଷିଣ ଦିଗେ ଦିଶେ ରସାଳବନ
ପନସ ନାରିକେଳ, ପୂଗ ମଣ୍ଡନ
ବିହଙ୍ଗ କଳରବେ ହୋଇ ମୁଖର
ପ୍ରମାଣୁ ଥାଏ ଧନ୍ୟ ଲଙ୍କା ନଗର, ସେ । ୨୨ ।

ବହିଗଲଣି ବୋଲି ହରଷ ମଳୟ
ବଇଞ୍ଚି କଣଲସୁ କରେ ନିଶ୍ଚୟ
ପୁଷ୍ପସାର ପାଦପେ ଶୋଭିତ ଗିରି
ବସନ୍ତ ମୁଖେ ଧରେ ଉଦ୍ୟାନ ଶିରୀ, ସେ । ୨୩ ।

ଋତୁରାଜ ଆସିବେ ବୋଲି କାତରେ
ଶିଶିର ତନୁ ଭ୍ରମ ଶୀତ ଅନ୍ତରେ
ଡ଼ରି ପଳାଇଯିବ କରୁ ବିଚାର
ଚିନ୍ତାରେ କ୍ଷୀଣ ହେଲା ବଳ ତାହାର, ସେ । ୨୪ ।

ମୁକ୍ତ କିରଣ ପକ୍ୱ ପତ୍ର ଅଙ୍ଗରୁ
ବଉଳ ଧରିଲେଣି ରସାଳ ତରୁ
ନାଶି ପୌଗଣ୍ଡ ବାଲ୍ୟ ଯଥା ଯୌବନ
ପ୍ରବେଶ ମାତେ କରେ ନବ ଶୋଭନ, ସେ । ୨୫ ।

ଅଶୋକ ଗୁଚ୍ଛକଳି କୁସୁମ ଗୁଚ୍ଛ
ବନ୍ଧ କରଇ ଆନ ସୁଷମା ତୁଚ୍ଛ
ଲମ୍ବାଇ କିଶଳୟ ତୋରଣ ପରି
ଘନ ନୀଳ ଛଦନେ ସର୍ବାଙ୍ଗ ଭରି, ଯେ । ୨୬ ।

ମନୋହର ଭୂଧରେ କରୁଁ ବିହାର
ସୈନ୍ୟ ଗହଣେ ରାମ ସୁଗୁଣାଧାର
ଦେବବାଣୀରେ ଶିଳା ବକ୍ଷେ ଲେଖନ—
ଦେଖି, ବୋଇଲେ ଭ୍ରାତେ କର ପଠନ, ଯେ । ୨୭ ।

ପଢ଼ିଥାରି ଲକ୍ଷ୍ମଣ ଦେଲେ ଉତ୍ତର
ଏ ଅଟେ ବୀର ଲଙ୍କେଶ୍ୱର ଭୂଧର
ବିଦେଶାଗତ ପାନ୍ଥ ବିଶ୍ରାମ ସ୍ଥଳ
ଏ ମନୋହର ଗିରି ବନ ସଙ୍କୁଳ, ଯେ । ୨୮ ।

ଲୋଡ଼ାନାହିଁ ଏଠାରେ କାହା ଆଦେଶ
ପୂର୍ଣ୍ଣ ହୋଇଛି ଜଳ ଫଳେ ବିଶେଷ,
ଇଚ୍ଛାନୁରୂପେ ପାନ୍ଥ କରି ଆହାର
ନିର୍ଭୟ ହବେ କରିପାରେ ବିହାର ଯେ । ୨୯ ।

ଅସ୍ତାଚଳେ ତପନ ହେଉଁ ଗୋପନ
ଧରି ଜବା-କୁସୁମ ରଙ୍ଗ କିରଣ
ବିରାଟ ଗିରିବରେ ସୈନ୍ୟ ନିକର
ସହିତ ବିଶ୍ରମିଲେ ବେନି ସୋଦର, ଯେ । ୩୦ ।

ଯନ୍ତ୍ରଜାତ ଆଲୋକ ରାଜ ନଗରେ
ଜଳି ଉଠନ୍ତେ ବିଦ୍ୟୁଲତା ବେଗରେ
କଟକ ଶୋଭା ଯେମେ ଦିଶିଲା ଝଳି
ବିସ୍ତାର କେତେ ତାର ନ ହୁଏ କଳି, ଯେ । ୩୧ ।

ସୁବଳୟ ଭୂଧରେ ସୈନ୍ୟ ନିକର
ବଡ଼ ବଡ଼ ଆଲୋକ ଉଜ୍ଜ୍ୱଳତର

ସହସ୍ରାଧିକ ଗଣି ସୀମା କଳନା
କରିବା ଆଜ, ଭ୍ରମ ହେଲା ଗଣନା, ସେ । ୩୨ ।

ବାଜ ଉଠିଲା ଦେବ ଆଳୟେ ତୂରୀ
ଭେରୀ, ଝମକ, ଘଣ୍ଟ, ଘଣ୍ଟା ମହୁରୀ
ନଗରେ ପ୍ରତିଧ୍ୱନି ହୋଇ ତାହାର
କମ୍ପାଇ ଦେଲା ବନ, ଗିରି ବାହାର ସେ । ୩୩ ।

ଅମିତ ବିଦ୍ୟାଳୟେ ସ୍ତବ ସଙ୍ଗୀତ
ଗାଇ ମୋହିଲେ ଛାତ୍ରେ ସକଳ ଚିତ୍ତ
ଅସଂଖ୍ୟ କଳକଣ୍ଠ ମଧୁର ଗାନ
ନାଗରିକେ କଲା ଆନନ୍ଦ ଦାନ, ସେ । ୩୪ ।

ରାଜ ବେତନ ଭୋଗୀ ବିବେକୀ ଗୁରୁ
ନଗର ଧର୍ମଶାଳା କଲେ ସଂଖ୍ୟାର—
ଅତିଥି ବର୍ଗଙ୍କର ସତ୍କାର ପରେ
ପ୍ରବେଶ ହେଲେ ସୁବଳସୁ ଭୂଧରେ ସେ । ୩୫ ।

ଶୁଣିଲେ ପାରାବାର କରି ବନ୍ଧନ
ସୈନ୍ୟ ଗହଣେ ରାମ ବୀର ନନ୍ଦନ
ବିଶ୍ରମିଛନ୍ତି ସୁବଳସୁ ପର୍ବତେ
ବୀରମଣି ଅନୁଜ ଜେନା ସଙ୍ଗତେ, ସେ । ୩୬ ।

ପ୍ରଣମି ରାମ ସଙ୍କ କଞ୍ଜ ପଦରେ
କହାଇଲେ ଦୂତେ ଅତି ଭକ୍ତି ଅନ୍ତରେ
ଶ୍ରୀଦେବ ! ବୀର କୁଳ-ନନ୍ଦ ତପନ
ଶୁଣିମା ହେଉ ଥରେ ଆମ୍ଭ ବଚନ, ସେ । ୩୭ ।

ବୀର ଶ୍ରୀ ଲଙ୍କେଶ୍ୱରଙ୍କର ନିର୍ଦ୍ଦେଶ
ଯେତେ ଅତିଥି ଏଥି ହେବେ ପ୍ରବେଶ
ହେବ ସତ୍କାର ରାଜଧନୁ ତାଙ୍କର
ଜଣାନ୍ତୁ ହିଂସ୍ରାଙ୍କର ସଂଖ୍ୟା ତୁମ୍ଭର, ସେ । ୩୮ ।

ବୋଇଲେ ରାମ, କରେ ମୁଁ ଫଳାଶନ
ମୋ ବ୍ରତେ ବ୍ରତୀ ମଧ୍ୟ ମୋ ସୈନ୍ୟଗଣ
ଫଳ ମୂଳ ଗିରିରୁ ଆଣିବା ପାଇଁ
ବୀରେ ଅଛନ୍ତି ନିତ୍ୟ ଆସିବେ ଯାଇଁ ଯେ । ୩୯ ।

ଶିବିରୁ ଫେରିଯାଇ ରାବଣ ଦୂତ
ବୋଇଲେ ପ୍ରଭୋ ! ଦେଖିଲୁ ଯା ଅଦ୍ଭୁତ
ସାଗରେ ଦେଲେ ଏକ ସେତୁ ନିର୍ମାଣି
ବନୌକା ବେଶେ ବେନି ଧନୁଷ ପାଣି, ଯେ । ୪୦ ।

ଅସଂଖ୍ୟ ବୀର ସେନା ଘେନି ସଙ୍ଗରେ
ବିଶ୍ରମିଛନ୍ତି ସୁବଳସ୍ଥ ଭୂଧରେ ।
ଆମ୍ଭ ଧନ ସମ୍ଭାରେ ଯେତେ ବନତି—
ଦଳୁ, ନ କଲେ ବୀର ଢଳେ ସମ୍ମତ ଯେ । ୪୧ ।

ଜାଣିଥିଲେ ଲଙ୍କେଶ ସିନ୍ଧୁ ବନ୍ଧନ
ଦୂତ ବଦନୁ ଶୁଣି ଶୁଭାଗମନ
ମୋଦାଶ୍ରୁ ବର୍ଷି ହୋଇଗଲେ ତନ୍ମୟ
କହି ନମାମି ଦେବ ହେ ଦୟାମୟ, ଯେ । ୪୨ ।

ଜପ କଲେ ଲଙ୍କେଶ ଜୟ ଶ୍ରୀରାମ
ଜନକ'ସୁତାପତି କରୁଣା ଧାମ
କରିବେ ସତେ ମନୋରଥ ପୂରଣ
ମାଧବ କହେ ସଙ୍ଗ କଞ୍ଜ ଚରଣ, ଯେ । ୪୩ ।



# ତ୍ରୟୋଦଶ ସର୍ଗ

**ସଖ—ମଙ୍ଗଳ**

ମଧୁରେ ମାଧୁରୀମୟୀ ମନୋରମା ଉଷା ।
ରାଣୀ, ବିକଚ କମଳ ରକ୍ତାମ୍ବର ଭୂଷା । ୧ ।

ବିହଙ୍ଗମ ସହଚରୀ ଗଣ ଘେନି ସଙ୍ଗେ ।
ପ୍ରାଚୀ ଦୁର୍ଗ ଦ୍ୱାରେ ବିହରନ୍ତି ନାନା ରଙ୍ଗେ । ୨ ।

ସେହି କାଳେ କ୍ଷୀଣ କାୟା ବଣିକ କାମିନୀ—
ଯାମିନୀ, ମିଳାଇ ନେତ୍ର ମୁଞ୍ଚି ସ୍ରୋତସ୍ୱିନୀ । ୩ ।

ଅଗସ୍ତି କରପଲ୍ଲବ ଯୋଡ଼ି କହେ ବାଣୀ
ମୋ ଦୁଃଖ ଶୁଣିମା ହେଉ ଥରେ ଉଷାରାଣୀ । ୪ ।

ଶ୍ୟାମ କୌଶେୟ ବସନେ ମଣ୍ଡାଇ ଅବନୀ ।
କରିଥିଲି ବହୁ ମୂଲ୍ୟେ ଗୋଟିଏ ବିପଣୀ । ୫ ।

ଇନ୍ଦ୍ର ନୀଳମଣି ନିଭ ନଭେ ହୀରା ମଣି ।
ଏନା ସୂତେ ସାଜିଥିଲି କେ, ପାରେ ତା ଗଣି । ୬ ।

ଗ୍ରାହକ ଗଣ ମାନସ ରଞ୍ଜନ ଆଶାରେ ।
ସଜାଇଥିଲି ଯତନେ ସକଳ ଆଶାରେ । ୭ ।

ସନ୍ଧ୍ୟାରୁ ଆଲୋକ ଧରି କଳାକର କରେ ।
ନିଶୀଥ ପର୍ଯ୍ୟନ୍ତ ଥିଲେ ମୋର ଆପଣରେ । ୮ ।

ଅବର୍ଣ୍ଣ୍ୟ ଦ୍ରବ୍ୟ ମନରେ ନ ଭାବି ଅରୁଣ ।
ହରଣ କଲେ ତା, ଘେନି ସଙ୍ଗରେ ଅରୁଣ । ୯ ।

ଚରଣ ଧରି ଅଧୀନା ପଶୁଛି ଶରଣ ।
ନ ବୁଝିଲେ ଏହି ସ୍ଥାନେ ହେବ ମୋ ମରଣ । ୧୦ ।

ଉଷାରାଣୀ ପଚ୍ଛରନ୍ତେ ସାକ୍ଷୀ କିଏ ତୋର ।
କହେ ଜାଣନ୍ତି ଏ କଥା କୌଶିକ, ଚକୋର । ୧୧ ।

କ୍ରୋଧେ ରଙ୍ଗ କେବେ ଭଷାରାଣୀ ପଗ୍ରରଇ ।
କହେ। ସୂର୍ଯ୍ୟ ! ଏହା ଧନ ହରଲ କମ୍ପାଇ । ୧୨ ।

କେ କହଲ ଗିରଦୁର୍ଗ ଲଭ ବୋଲୁ ରବ ।
ନାଶାଯୋଷା ଗୃଧ୍ର ଦେଖି ସୂର୍ଯ୍ୟ ଭ୍ରମ ଛବ । ୧୩ ।

ଭଷା ବୋଲେ ରଙ୍ଗ ନେହ ଦେଖାଅ କମ୍ପାଇ ।
ନ କରଇ ଶପଥ ମୁଁ ଘୁଡ଼ଦେବ ନାହିଁ । ୧୪ ।

ଅକ୍ଷତେ କମଳ କୁମ୍ଭ ଭୃଙ୍ଗ ଅନ୍ଧବର ।
କରେ ଆଣିଲେ ତୁଟିବ ସନ୍ଦେହ ଆମ୍ଭର । ୧୫ ।

ମୃଦୁ ହାସେଁ ଭାନୁ ତୂର୍ଣ୍ଣ କରକୁ ବଢ଼ାଇ ।
ପଦ୍ମ କୁମ୍ଭ ଦେଲେ ଭଙ୍ଗ ଭୁଜଙ୍ଗ ଭଡ଼ାଇ । ୧୬ ।

ନିର୍ଦ୍ଦୋଷ ନିର୍ଦ୍ଦୋଷ କହି ପ୍ରଗୃହକ କାକ ।
ଗ୍ରାମେ ଗ୍ରାମେ ବହଶଲେ ଦେଇ ଏହି ଡାକ । ୧୭ ।

କାକ ଡାକେ ଚେତ ରାମଚନ୍ଦ୍ର ସୈନ୍ୟଗଣ ।
ସୁବଲଯ୍ୟ ଗିର ଶୋଭା କରନ୍ତି ଦର୍ଶନ । ୧୮ ।

ଏ-କେ ସୁଷମା ଆକର ସୁବଲଯ୍ୟ ଗିର ।
ଦୁକେ ବଢ଼ାଇ ଦେଇଛି ବସନ୍ତ ଯା, ଶିରା । ୧୯ ।

ଲକ୍ଷ୍ମଣ ବୋଇଲେ ପ୍ରଭୋ ! ଦିଅନ୍ତୁ ଆଦେଶ ।
କେ ଦେଇ ପାରବ ଆଣି ସୀତାଙ୍କ ସନ୍ଦେଶ । ୨୦ ।

ସାକେତ ନଗରୀ ଲକ୍ଷ୍ମୀ ଅଛନ୍ତି କପର ।
ପଚପ୍ରାଣା ଥିବେ ଠିକ ନିଜ ଦେହ ଧର । ୨୧ ।

ରାମଚନ୍ଦ୍ର ବାରେ ଗୃହିଁ କରୁଁ ଅନୁମାନ ।
କର ଯୋଡ଼ ଭଭା ହେଲ ବୀର ହନୁମାନ । ୨୨ ।

ଆଦେଶ ଦେଲେ ହେ ଦେବ ! ଜନନୀ ଭଦନ୍ତ ।
ଆଣିବ ଲଙ୍କାରେ ଭୁମି ବୋଲେ ହନୁମନ୍ତ । ୨୩ ।

ରତ୍ନ ଅଙ୍ଗୁରୀୟ ରାମ, ବୀରବର କରରେ-
ଦେଇ ଆଶୀଷିଲେ ବାବୁ ଫେର ତୁ ଶୁଭରେ । ୨୪ ।

ଶ୍ରୀରାମ ଅଭୟ ପଦେ କରି ନମସ୍କାର ।
ପବନ ବେଗେ ପାବନି ହୋଇଲା ବାହାର ।୨୫।

ଦେଖିଲା ନଗରେ ରାଜ ସରଣୀ ନିକର ।
ହୋଇଛି ତୂଳ ତଳପ ପରି ମୃଦୁତର ।୨୬।

ଫଳ, ପୁଷ୍ପସାର ତରୁ ନିବଡ଼ ଛଦନେ ।
ମଣ୍ଡି ହୋଇ ରହିଛନ୍ତି ବେନି ପାର୍ଶ୍ୱେ ଘନେ ।୨୭।

ଦିବସେ ରୋଧି ମିହିର ପ୍ରଚଣ୍ଡ କିରଣ ।
କରନ୍ତି ପଥିକଗଣ ଶ୍ରମ ସମ୍ବରଣ ।୨୮।

କାଲୋଚିତ ଫଳ ପୁଷ୍ପ ପଥିକେ ପ୍ରଦାନି
ବିକାଶନ୍ତି ଯଶ ଯଥା ସ୍ୱାର୍ଥହୀନ ଦାନୀ ।୨୯।

କଟକେ ଝଟକେ ନାନା ଶିଳ୍ପ କଉଶଳ ।
କାମନା କଳପତରୁ ବିପଣୀ ସକଳ ।୩୦।

ଲେଡ଼େ ରାମ ରମଣୀୟ ଅଙ୍କ ସରୋବର ।
ପ୍ରଫୁଲ୍ଲ ଲୀଳା କମଳ ପବନ-କୁମର ।୩୧।

ଶତ ଶତ ରାଜ ପଥେ ଭ୍ରମି ହନୁମାନ
କରୁଥାଏ ବାର୍ତ୍ତା ପ୍ରାପ୍ତି ଇନ ଅନୁମାନ ।୩୨।

ଦେଖିଲା ପୁଷ୍ପ ଚଙ୍ଗୁଡ଼ା ବାମ-କରେ ଧରି ।
ରମଣୀଏ ଆସେ ରମଣୀୟ ଗତି କରି ।୩୩।

କିଏ ତୁମ୍ଭେ କେଣେ ଯିବ ପୁଚ୍ଛୁ ବୀରବର ।
ବ୍ରୀଡ଼ା ନତ ମୁଖେ ଦେଲା ଲଳନା ଉତ୍ତର ।୩୪।

ମାଳାକାର କୁଳବଧୂ ରାଜ ଭବନକୁ ।
ଯାଉଛି ମୁଁ ଘେନି ଏହି କୁସୁମଚୟକୁ ।୩୫।

ଦେବୀ ଦେବ ଧର୍ମ-ଦେବ ଶ୍ରୀପଦ ଅର୍ଚ୍ଚନ ।
କରନ୍ତି ନିତ୍ୟ ଆମ୍ଭର ଭୂପତି ରତନ ।୩୬।

ଅଚଳ ଭକତି ରଖି ଶିକଣ୍ଠ ପଦରେ ।
ଖ୍ୟାତି ଲଭିଛନ୍ତି ବିଶ୍ୱେ ଖାତେଶ ପଦରେ ।୩୭।

ସମ୍ମୁଖ ଗୃହ ସୁବାସ କୁସୁମେ ଯତନ ।
ଦ୍ୱାର ନିର୍ମାଣି ଲଭିଛି ମୁଁ କେତେ ରତନ । ୩୮ ।

ଲଙ୍କେଶ୍ୱରଙ୍କ ନିମନ୍ତେ ଏକ ମନୋହର ।
ଦ୍ୱାର ନିର୍ମାଣି ସମସ୍ତ ନ ଥାଏ ଆମ୍ଭର । ୩୯ ।

କେତେ ମାସ ହେଲା ହେଲା ଦ୍ୱାର ଦରକାର ।
ରାଜା ଆଜ୍ଞା ଏଡ଼ିବାକୁ କ୍ଷମତା କାହାର । ୪୦ ।

ଏ କଥା ନ ବୁଝି ଡେରି ହୋଇଲେ ଆମ୍ଭର
ରଙ୍ଗ ଆଖି ହୋଇଯାଏ ରାଜ ଭୃତ୍ୟଙ୍କର । ୪୧ ।

ରାଜାଙ୍କର ଦିଅ ପୂଜାବେଳ ହୋଇଲାଣି ।
ତପସ୍ୱିନୀ ପଦ ପୁଣି ପୂଜି ଯିବେ ରାଣୀ । ୪୨ ।

ତପସ୍ୱିନୀ କିଏ ବୋଲି ପଚାରନ୍ତେ ବୀର ।
ଭାଷିଲା ପ୍ରଗଲ୍‌ଭ ହୋଇ ଯିବାକୁ ଅସ୍ଥିର । ୪୩ ।

ଭାରତ ଭ୍ରମଣେ ତାଙ୍କୁ ଆଣି ଲଙ୍କପତି ।
ସେବନ୍ତି ରାଣୀ ସହିତ ମଣି ମୁଖ୍ୟ ଗତି । ୪୪ ।

ବୀର ବୋଲେ ଯିବାକୁ ଗୋ ନ ହୋଇ ଅସ୍ଥିର ।
କହି ଦିଅ ମୋତେ ସେହି ଦେବୀଙ୍କ ମନ୍ଦିର । ୪୫ ।

ଅଶୋକ ବନେ ଅନନ୍ତ ପତିବ୍ରତ ଧରି ।
ସେବକା ନାରୀ ଗହଣେ ବିପୁର ସୁନ୍ଦରୀ । ୪୬ ।

କେଉଁ ପଥେ ଯିବ ବୋଲି ପୁଚ୍ଛୁ ହନୁମାନ
ବତାଇଲା ମାଳକାର ଲଳନା ସନ୍ଧାନ । ୪୭ ।

କୁସୁମ ଗୃହଗଡ଼ା ବାମେ ତୋଳି ଆନ କର ।
ତର୍ଜନୀ ଦେଖାଇ କହେ ଦେଖ ବୀରବର । ୪୮ ।

ଏହି ଯେ ନଭଃଚୁମ୍ବିତ ଧୂର୍ଜଟୀ ମନ୍ଦିର ।
ଦିଶୁଛି ଶ୍ୱେତ ପତକା ଶିଖରେ ସୁନ୍ଦର । ୪୯ ।

ବିବିଧ ରତନ ମାନ ହୋଇଛି ଜଡ଼ିତ ।
ଶୁଭ୍ର ଅଭ୍ର ମାଳେ କିସେ ଖେଳଇ ତଡ଼ିତ । ୫୦ ।

ତହୁଁ କୃଷ୍ଣବର୍ଣ୍ଣ ପଥ ଘଟିକ ଭବନକୁ
ଯାଉଛି ଉତ୍ତର ପଥ ସମର କ୍ଷେତ୍ରକୁ । ୫୧ ।

ପୂର୍ବ ଦକ୍ଷିଣ ସରଣୀ ବଡ଼ ବଜାରକୁ ।
ଲକ୍ଷ୍ୟକରି ଗ୍ଭଡ଼ି ଯିବ ସେ ପଥ ମାନଙ୍କୁ । ୫୨ ।

ଦକ୍ଷିଣ ପଶ୍ଚିମ ରଙ୍ଗ ପଥେ ତୁମ୍ଭେ ଯିବ ।
ବେଦ ବିଦ୍ୟାଳୟ ଠାରୁ ପଶ୍ଚିମେ ଗମିବ । ୫୩ ।

ପଥ ବତ୍ରରେ ଅନେକ ବିପ୍ରର ଭବନ ।
ଦକ୍ଷିଣେ ପଡ଼ିବ ଆୟୁର୍ବେଦ ନିକେତନ । ୫୪ ।

ତା, ପରେ ପଡ଼ିବ ଏକ ବିରାଟ ନିଳୟ ।
ସର୍ବଶାସ୍ତ୍ର ଶିକ୍ଷା କେନ୍ଦ୍ର ବିଶ୍ୱ-ବିଦ୍ୟାଳୟ । ୫୫ ।

ସଙ୍ଗୀତଶାଳା ପ୍ରମୋଦ ଉଦ୍ୟାନ ପାଶରେ ।
ସମର ଶିକ୍ଷା ପ୍ରାଙ୍ଗଣ ପଡ଼ିବ ତା ପରେ । ୫୬ ।

ବାମେ ଯଜ୍ଞପୀଠେ ବସି ପଣ୍ଡିତମଣ୍ଡଳ
ଶ୍ରୁତି ପାଠେ କରୁଥିବେ ସେ ସ୍ଥାନ ଚହଲ । ୫୭ ।

ତହୁଁ ଲଙ୍କେଶ୍ୱରୀ ପଦ କରି ଦରଶନ
ସୁରମ୍ୟ ଅଶୋକ ବନେ କରିବ ଗମନ । ୫୮ ।

ସେ ବନେ ନାରୀ ଗହନେ ତପସ୍ୱିନୀ ସତୀ—
ଅଛନ୍ତି ଯାଅ ଦର୍ଶନେ ଯଦି ତୁମ୍ଭ ମତି । ୫୯ ।

ମାଳୀକାର ବନ୍ଧୁଠାରୁ ପଥ ନିଦର୍ଶନ— ।
ପାଇ, ଚଳିଲ ହରଷେ ପବନ ନନ୍ଦନ । ୬୦ ।

ମୂର୍ତ୍ତି ବିରାଟ କଟକ ଅନୁପମ ଶୋଭା
ବିଶ୍ୱ ଶିଳ୍ପୀଙ୍କ ତୁଳନା ଶୀ ହେଉଥାଏ ଲୋଭା । ୬୧ ।

ଅବନୀ ବନିତା ଶୁଭ୍ର ଲଲାଟ ସିନ୍ଦୁର
ଭବେ ହୋଇବ ନିଶ୍ଚୟ ଏ କନକ ପୁର । ୭୨ ।

ବନ ଚଉପାଶେ ତୃଣସଙ୍ଗ ତନ୍ତୁରାଜ ।
କଣ୍ଟକିତ ଲୌହ ତାର ଜାଲେ ସଦା ସଜ୍ଜ । ୭୩ ।

ପଥ ସ୍ଥିର କରି ବୀର ପଶିଲ ଭିତରେ ।
ବନ ଶୋଭା ଗଣି ହୃଦେଁ ହରଷ ଅନ୍ତରେ । ୭୪ ।

ନଗରାଜ ସୁତା! ପଦେ କରି ନମସ୍କାର
ଦୀନ ମାଧବ କରଇ କୁଟୀରେ ବସ୍ତୁର । ୭୫ ।



# ଚତୁର୍ଦ୍ଦଶ ସର୍ଗ

**ସ୍ୱର—ଦେଶୀ**

ବସନ୍ତେ ଅଶୋକ ବନେ    ରାମ ରମଣୀ ଦର୍ଶନେ
ବୀର ପବନ-ନନ୍ଦନ କରନ୍ତି ବିହାର,
ଋତୁ-ପତିଙ୍କ ଭବନ    ହେବ ଏ ବନ ଭୁବନ
ବିଲୋକି ନବ ଶୋଭନ କଲ ବିଚାର
ବହେ ମନ୍ଦ, ମୃଦୁ ମଳୟ
ପୁଷ୍ପବାସ ସଙ୍ଗେ ମୋହି ପ୍ରାଣୀ ହୃଦୟ । ୧ ।

କୋକିଳ କଳ କାକଳୀ    ବାଣୀ ସଙ୍ଗୀତହୁଁ ବଳି
ପ୍ରବେଶି ଶ୍ରବଣଗଣେ କରେ ମାନସ,
ମଧୁପ ପରି ଭ୍ରମଣ    କରନ୍ତି ମଧୁପଗଣ
ମଧୁ ଗୁଞ୍ଜନେ ବିକଚ କୁସୁମ ବଣ
କୁଶ କଣ ବତ ମରନ୍ଦ
ବରଷେ, ସରସେ ଜନମାଇଁ ଆନନ୍ଦ । ୨ ।

କୁସୁମ କଳି କଳିତ    ଆହ୍ଲାଦିତ ସୁଲଳିତ
ଲତିକାକୁଳ ସମୀରେ, ଦୋଳାୟମାନ,
ଅମର ମୋହିନୀ ବାର    ଭୃଙ୍ଗାଳୀ ନେତ୍ରଠାରେ
ରଙ୍ଗେ ରଚନ୍ତି କି ସେ ମଧୁର ଗାନ,
ଗୃହନ୍ତି କର-ତଳ ହଲାଇ,
ନୃତ୍ୟନ୍ତି ଅବା ଭୁବନ ମୋହିବା ପାଇଁ । ୩ ।

ଶୋଭଇ ଯଥା ତୋରଣ    ଧରି ପାଟଳ ବରଣ
ଗୃହନ୍ତି କିଂଶୁକଚୟ ଅଧୋବଦନେ,
ମଞ୍ଜୁଳତର ମଞ୍ଜରୀ    ବଞ୍ଜୁଳ ପାଦପ ଧରି
ଘୋଡ଼ାଇ ରଖିନ୍ତି ଘନ ନୀଳ ଛଦନେ,
ମାରବୀର ଆଗମ ଜାଣି,
ପ୍ରକୃତ ରଖୁନ୍ତି କିସେ ସାପୁକ ଶାଣି । ୪ ।

ବନେ ଅତୁଳ ଉଦ୍ୟାନ          ଗୃହିଁ ବୀର ହନୁମାନ
ଶାଦ୍ୱଳ ବନ ଘନେ କି ଖେଳେ ତଡ଼ିତ,
କରନ୍ତି ମୃଦୁ ଗୁଞ୍ଜନ          ନାଗର ମଧୁପଗଣ
ନବ ଫୁଲ୍ଲବାଲା ଅଙ୍କେ, ହୋଇ ଝଙ୍କୃତ
ସୁପ୍ତ ବନ ପବନ ସଙ୍ଗ—,
ଲଭି, ଦୋହଲି ଉଠେ କି ସିନ୍ଧୁ ତରଙ୍ଗ । ୫ ।

ଫଳଭାର ପୁଷ୍ପସାର          ବୃକ୍ଷସାର ପତ୍ରସାର
ତରୁଲତା ରାଜି ହୋଇଛନ୍ତି ଶୋଭନ,
ବିମଳ କମଳେ ପୂରି          ବିମଳ କମଳେ ପୂରି
ମନ ନୟନ ହରନ୍ତି ସରସୀଗଣ,
କଳ-କଳ ଶବଦେ କଳ—
ଯତନ୍ତେ ଭଲ ମଣ୍ଡୁଥାନ୍ତି ବନ ମଣ୍ଡଳ । ୬ ।

ବିବିଧ ରୋଗ ନାଶନ          ଲତା ମହୀରୁହଗଣ—
ସଙ୍ଗୀ ଜଗତ ପରାଣ ନାଶଇ ରୋଗ,
କବି, ବୈଦ୍ୟ ଯୋଗୀଚୟ          ଯେ ବନେ ରତ ନିଳୟ
ସ୍ୱକର୍ମ ସାଧନ୍ତି ଲଭି ଅମର୍ତ୍ତ୍ୟ ଯୋଗ
ଯହିଁ ମାଳକାର ନିକର
ବଢ଼ାଇବାକୁ ବନର ଶୋଭା ତତ୍ପର । ୭ ।

ଭୀମ ଗଦାଧର ପାଣି          ବିକ୍ରମ କେଶରୀ ଟାଣି
ବିଲୋକି ବନ ରକ୍ଷକେ ହୋଇ ଚକିତ,
କେଉଁ ଦେଶେ ତୁମ୍ଭ ଘର          କେ ତୁମ୍ଭେ କାହା କୁମର
ପୁଚ୍ଛନ୍ତି କେହୁ ବନରକ୍ଷୀ, ମଧୁର ସ୍ମିତ—
ଆସ୍ୟେ, ଭଣେ ବାତକୁମର,
ଦୂତ ମୁଁ, ଅବନୀ ବୀର ଶ୍ରୀରାମଙ୍କର । ୮ ।

ବୀର ମୁକୁଟ ରତନ          ଶ୍ରୀରାମ ବଂଶ ନନ୍ଦନ
ଦୁର୍ଜୟ ସାନୁଜ ବହୁବୀର ଗହଣେ,

ସିନ୍ଧୁବାନ୍ଧ ସୁବଳସ୍ଥ ପଟ୍ଟରେ ପ୍ରଭୁ ବଜାସ୍ଥ
ମୁଁ ଆଗ ଆସିଛି ସତୀ ସୀତା ଦର୍ଶନେ
ଶୁଣି ବନରକ୍ଷୀ ନିକର,
କହ୍ନ ଦେଲେ ତପସ୍ୱିନୀ ଦେବୀ ନବର । ୯ ।

ଲଙ୍କାପୁରୀ ପୁରନ୍ଦରୀ ପୁଷ୍ପମାଳ କରେ ଧରି
କରୁଥାନ୍ତି ସୀତା ଦେବୀ ଗଳେ ଅର୍ପଣ,
ଆନପୁର ବାମାଗଣ ସେବନ୍ତି ସତୀ ଚରଣ
ସେ କାଳେ ପ୍ରବେଶି ପ୍ରଭଞ୍ଜନ ନନ୍ଦନ,
ନମି ଗୃନ୍ଥ ଚରଣ ତଳେ
ଅର୍ପିଲ ରତ୍ନମୁଦ୍ରିକା କର କମଳେ । ୧୦ ।

କାନ୍ତ ମୁଦ୍ରିକାଲେକନେ ସତୀ ସଜଳ ନୟନେ
ବୋଇଲେ କେ ତୁମ୍ଭେ ବୀର କାହା ନନ୍ଦନ,
ଉତ୍ତରଲ ପ୍ରଭଞ୍ଜନ ନନ୍ଦନ, ବୀର ବଦନ—
ଶ୍ରୀରାମଚନ୍ଦ୍ର ଦୂତ ମୁଁ, ତବ ଦର୍ଶନ—
ଯୋଗେ ମୋତେ କର ପ୍ରେରଣ
ସିନ୍ଧୁତଟେ ଗୋନେ ବନେ କଞ୍ଜ-ଲୋଚନ । ୧୧ ।

କହ ପବନକୁମର କୁଶଳେ ବେନି ସୋଦର
ଅଛନ୍ତି ନା କ୍ଷୀଣ ନୋହ୍ନ ମୋର ବ୍ୟସନେ ।
କରିଥିବେ ତ ବର୍ଜନ ସ୍ନାନ ଶୟନ ଅଶନ
ରଙ୍ଗ ରାଜୀବଲୋଚନ ସାଶ୍ରୁ ନୟନେ
କେଡ଼େ ବଡ଼ ଦାରୁଣ ଦୁଃଖ
ମୋ ପାଇଁ ଭୋଗୁଥିବେ ତ ପଙ୍କଜମୁଖ । ୧୨ ।

କରୁଣ ଅନ୍ତରେ ବୀର— ରସରେ ବୀର-ମିହିର
ବିଭୂଷିତ ହୋଇଛନ୍ତି ଶୁଣ ଜନନି!
ବଜ୍ର- ଇନ୍ଦ୍ରନୀଳମଣି— ବରନ ସୁଗୁଣ-ଖଣି
ସୁବଳସ୍ଥା ଗୋନେ ବନେ ବୋଲେ ପାବନି ।

ତବ ଦୁଃଖ ନାଶିବା ପାଇଁ
କେତେ ବୀର ଆସିଛନ୍ତି କଳନା ନାହିଁ । ୧୩ ।

ଭଷ ମା, ତବ କୁଶଳ      ମୋଟେ ବୀର ଆଖଣ୍ଡଳ
ପଚାରିବା ପାଇଁ ହେଉଥିବେ ଚଞ୍ଚଳ
ଏହ୍ନ ଲଙ୍କା ରାଜରାଣୀ,      ସେବନ୍ତି ମୋ ମନ ଜାଣି
ସ୍ୱାମୀ ବିରହେ ହେଉଛୁ ସଦା ବିକଳ—
ବୋଲୁଁ, ବୋଲେ ବାତନନ୍ଦନ
ନିକଟେ ହୋଇବ ମା ଗୋ! ସ୍ୱାମୀ ଦର୍ଶନ । ୧୪ ।

ଭାବନା ହେଉ ବାହାର      କଣ୍ଠୁ କାଢ଼ି ରତ୍ନହାର
ସ୍ୱାମୀ କରେ ଦେବ କହି କଲେ ଅର୍ପଣ
ରତ୍ନହାର ଧରି କରେ      ପ୍ରଚଣ୍ଡ ଡାତ ଗଢରେ
ପ୍ରବେଶିଲ ରାମଙ୍କର ପାଶେ ବହ୍ନ
ଚୁଚୁଁ ଗୃହିଁ ପାବନ ହାର
ସୀତା ବାର୍ତ୍ତା ପୁଚ୍ଛିବାକୁ ରାମ ଅଧୀର । ୧୫ ।

କହ ପବନ କୁମର      କପରି ସୀତା ମୋହର
ଅଛନ୍ତି ଶୁଣି ଏ ପ୍ରାଣ ହେଉ ଶୀତଳ ।
ଲଙ୍କଦେବୀ ସନମାନେ      ବୋଲେ" ଦୁର୍ଗ ନାରୀଗଣେ
ସେବା କରନ୍ତି ଜନନୀ ପଦ କମଳ
ନିଜେ ମନ୍ଦୋଦରୀ ସୁନ୍ଦରୀ
ପୂଜନ୍ତି ପଦ୍ମର ପୁଷ୍ପ ଚନ୍ଦନ ଧରି । ୧୬ ।

ସଶୋକେ ଅଶୋକ ବନେ      ଅଛନ୍ତି ନାରୀ ଗହଣେ
ସତୀବ୍ରତ-ତୀକ୍ଷ୍ଣ ଖଡ୍ଗ-କରି ଧାରଣ
କରି ଗଳାରୁ ବାହାର      ଦେଇଛନ୍ତି ରତ୍ନହାର
କରିବାକୁ ତବ କର କଞ୍ଜେ ଅର୍ପଣ ।
ନିଅ ପ୍ରଭୁ କହି ଅର୍ପିଲି !
ବିରହାନଳେ କି ? ଘୃତାହୁତି ଢାଳିଲି । ୧୭ ।



# ପଞ୍ଚଦଶ ସର୍ଗ

(ସଜ—ରଘୁବ୍ରଗ୍ଧା)

ପ୍ରଭୁଭକ୍ତ ପ୍ରଭଞ୍ଜନ ନନ୍ଦନ
ବଦନୁ ଶ୍ରୀରାମ କରୁ ଶ୍ରବଣ,
ସତୀ ପତିପ୍ରାଣା ସୀତା କୁଶଳ
ହେଲ ଭୀମ କ୍ରୋଧାନଳ କମଳ,
ନ କରି ଯୁଦ୍ଧ ଘୋଷଣ ଯେ,
ସେନାନୀଙ୍କ ମେଳେ ସ୍ଥିର କଲେ ଆଗ
କରିବା ପତ୍ର ପ୍ରେରଣ । ୧ ।

ସର୍ବମତେ ପତ୍ର କରି ଲେଖନ
କରିଲେ ଅଙ୍ଗଦ କରେ ଅର୍ପଣ
ତୁମ୍ଭେ ପରିଚିତ ଲଙ୍କାନାଥର
ଆବର ଅଛନ୍ତି ତବ ପିଅର
ଖଳ ଦୁର୍ଗ ବ୍ୟବହାର ଯେ,
ରାଜପୁତ୍ର ବିନା ଅନୁଭୂତ କେବେ
ହୋଇ ନ ଥାଏ କାହାର ଯେ । ୨ ।

ନମି ଶ୍ରୀରାମଙ୍କ ପଦକମଳେ
ଗତି କଲା ବୀର ଅତି ଚଞ୍ଚଳେ
ବୀର ରସେ ବୀର ହୋଇ ଆବେଶ
ଶଙ୍କାହୀନ ଲଙ୍କାପୁରେ ପ୍ରବେଶ
ଗୃହିଁ କଟକ ସୁଷମା ଯେ,
ବାହୁରେ ଅଙ୍ଗଦ ତିନୀ ଭୁବନରେ
ନ ଥିବ ଏହା ଉପମା ଯେ । ୩ ।

ପରିବେଶି ଦୁର୍ଗ ସିଂହ ଦ୍ୱାରଣେ
ସିଂହ ଯଥା ମନେ କରି-ବାରଣେ

ଦ୍ୱାରୀ କି ଶୁଣିଲେ ଚଞ୍ଚଳ ଯାଇ
ଲଙ୍କେଶ୍ୱର ପାଶେ ଦେଲା ଜଣାଇଁ
ଦୂତ ରାମଚନ୍ଦ୍ରଙ୍କର ଯେ,
ଉଭା ହୋଇଛନ୍ତି ଦୁର୍ଗ ଦ୍ୱାର ଦେଶେ
ସାକ୍ଷାତ ଆଶେ ତୁମ୍ଭର । ୪ ।

ଦ୍ୱାରୀ ପାଇ ଲଙ୍କେଶ୍ୱର ନିର୍ଦ୍ଦେଶ
କରାଇଲା ବୀରେ ତଥି ପ୍ରବେଶ
ସ୍ୱର୍ଣ୍ଣ ସିଂହାସନେ ବସି ରାବଣ
ସଙ୍ଗେ ସେନା ମନ୍ତ୍ରୀ ଶୁକ-ସାରଣ
ବେଢ଼ିଛନ୍ତି ବୀରଗଣ ଯେ
ଧର୍ମଶାସ୍ତ୍ର ଚର୍ଚ୍ଚା କରୁଛନ୍ତି ବସି
ଋଷି, ପଣ୍ଡିତ ବ୍ରାହ୍ମଣ । ୫ ।

ବୀର ଦେଖି ରାଜସଭା ମହାନ
ପ୍ରଣମିଲା କରି ପଦ ପ୍ରଦାନ
ଯୋଗାଇ ବୀରଙ୍କୁ ଯୋଗ୍ୟ ଆସନ
ପଚାରିଲେ ଧୀରମଣି ରାବଣ
କେଉଁ ଦେଶେ ତବ ବାସ
କି ନାମ ତୁମ୍ଭର କାହାର ନନ୍ଦନ
କର ବୀର ! ପରକାଶ । ୬ ।

ହେ ବୀର ! କିଷ୍କିନ୍ଧା ରାଜ-ନନ୍ଦନ
ଅଙ୍ଗଦ ମୁଁ, ରାମବୀର ବନ୍ଦନ—
ଅଭୟ ଅମଳ କମଳ ପଦ
ମଣି ଜୀବନରେ ମୁଖ୍ୟ ସମ୍ପଦ
ସେବଇ, ରକ୍ଷ ସନ୍ତତ
ମୁଁ କେତେ ମାତର ମୋହଠାରୁ ବଳି
ବୀରେଛନ୍ତି ଶତ ଶତ । ୭ ।

ଚିନ୍ତା କଲେ ବୀରବର ରାବଣ
ବିକ୍ରମ କେଶରୀ ବାଲୀ ନନ୍ଦନ
ନେଇଛନ୍ତି ଯାହା ପଦେ ଶରଣ
ନିଶ୍ଚୟ ସେ ଧରା ଭାର ହରଣ
କରନ୍ତୁ ପର ଚଠନ
ଆଦେଶିଲେ ଗୁହିଁ ସଚିବ ଭୂଷଣ
ଶୁକ ସାରଣ ବଦନ, ଯେ ।୮।

ସୀତା ଆଣିବାର ମୁଖ୍ୟ କାରଣ
ଜଣାଇ ହେ ଲଙ୍କେଶ୍ବର ରାବଣ
କ୍ଷମା ଭିକ୍ଷାକର ଅର୍ପି ଜାନକୀ
ଯଦି ମନେ ଥାଏ ଅନ୍ୟ ଭାବକି
ଜଣାଅ ଆସି ଚଞ୍ଚଳ ଯେ
ଲଙ୍କା ଧ୍ୱଂସ ଆଶା ପୋଷି ବସିଛନ୍ତି
ମୋ ବୀର ସୈନ୍ୟ ମଣ୍ଡଳ ଯେ । ୯ ।

କରି ମନ୍ତ୍ରୀ ମୁଖୁ ପର ଶ୍ରବଣ
ବୋଇଲେ ଧୀରେନ୍ଦ୍ର ବୀର ରାବଣ
ଜାନକୀ ନୁହନ୍ତି ସୁତା ମୋହର
ଅର୍ପିବା କପରି ହେବ ସୁନ୍ଦର
ମୋ କଥା ନମଣି ବ୍ୟାଜ
ଜଣାଇବ ଯାଇ ଶ୍ରୀରାମଚନ୍ଦ୍ରଙ୍କୁ
ହେ କିଷ୍କିନ୍ଧା ଯୁବରାଜ ! । ୧୦ ।

ଶ୍ରୀରାମ ଲକ୍ଷ୍ମଣ ସୀତା ସଙ୍ଗରେ
ଯଦି ବୁଲେ ମୋର ଲଙ୍କା ନଗରେ
କରଯାନ୍ତୁ ଥରେ ମାତ୍ର ଭ୍ରମଣ
ପରେ ସୀତା ଆଣିବାର କାରଣ
ବୁଝିବ ତାଙ୍କ ହୃଦୟ ଯେ

ଏହ୍ନ ଅନୁରୋଧ ମୋର, ବା' ନିର୍ଦ୍ଦେଶ
ଯାହା କରିବେ ନିଶ୍ଚୟ । ୧୧ ।

କ୍ଷମା ଅସୁନ୍ଦର ବନା ଦୋଷରେ
ଦ୍ଵିତୀୟେ ବଜସ୍ୱୀ ବୀରପକ୍ଷରେ ।
ଚିନ୍ତା କରି ଯାହା କରିବେ ସ୍ଥିର
ଜଣାଇବ ମୋତେ ଅଙ୍ଗଦ ବୀର !
ବିଦାୟ ମାଗି ଝୁଣ୍ଡିଛ ଯେ
ବାଳିସୁତ ରାମ- ପାଶେ ପ୍ରକାଶିଲ
ରାବଣ ବୀର ଭାରତୀ ଯେ । ୧୨ ।

ତବ ପତ୍ର ପାଠ କରି ରାବଣ
ବୋଇଲେ କରନ୍ତୁ ସୀତା ଅର୍ପଣ ।
ଜାନକୀ ନୁହନ୍ତି ସୁତା ମୋହର
ଅର୍ପିବା କପରି ହେବ ସୁନ୍ଦର ।
ମୋ କଥା ନମଣି ବ୍ୟାଜ
ଜଣାଇବ ଯାଇ ଶ୍ରୀରାମଚନ୍ଦ୍ରଙ୍କୁ
ହେ କିଷ୍କିନ୍ଧା ଯୁବରାଜ । ୧୩ ।

ଶ୍ରୀରାମ ଲକ୍ଷ୍ମଣ ସୀତା ସଙ୍ଗରେ
ପଦ ବ୍ରଜେ ମୋର ଲଙ୍କା ନଗରେ
କରି ଯାନ୍ତୁ ଥରେ ମାତ୍ର ଭ୍ରମଣ
ପରେ ସୀତା ଆଣିବାର କାରଣ
ବୁଝିବ ତାଙ୍କ ହୃଦୟ ଯେ
ଏହ୍ନ ଅନୁରୋଧ, ମୋର ବା ନିର୍ଦ୍ଦେଶ
ଯାହା କରିବେ ନିଶ୍ଚୟ ଯେ । ୧୪ ।

କ୍ଷମା ଅସୁନ୍ଦର ବନା ଦୋଷରେ
ଦ୍ଵିତୀୟେ ବଜସ୍ୱୀ ବୀର ପକ୍ଷରେ ।

ଚିନ୍ତା କରି ଯାହା କରିବେ ସ୍ଥିର
ଜଣାଇବ ମୋତେ ଅଙ୍ଗଦ ବୀର !
ଶୁଣି ରାବଣ ଉତ୍ତର
ଚିନ୍ତା କଲେ ବସି ରାଜୀବ ଲୋଚନ
ହୋଇ ଯାଇଁ ନିରୁତ୍ତର । ୧୫ ।

ବୋଇଲେ ସମ୍ବୋଧେ ବୀର ଲକ୍ଷ୍ମଣ
ଧ୍ୟାଙ୍କ ଉକ୍ତି ଏହା ପଦ୍ମ ଇକ୍ଷଣ ।
ଶ୍ରୀରାମ ଲକ୍ଷ୍ମଣ ସୀତା ସଙ୍ଗରେ
ଭ୍ରମଣ କରିବେ ତା'ର ନଗରେ ।
ଏ ନିର୍ଦ୍ଦେଶ ରାବଣର
ପାଳନ କରିବେ ପୂତ ଶୁଭ୍ରଯଶା
ସୂର୍ଯ୍ୟ ବଂଶୀ ଧନୁର୍ଦ୍ଧର । ୧୬ ।

ଶୁଣି ନାହିଁ ଶିବ ଧନୁ ଭଞ୍ଜନ
ବୀର ପର୍ଶୁରାମ ଗର୍ବ ଗଞ୍ଜନ ।
ଯେ କରି ପାରିଲେ ସିନ୍ଧୁ ବନ୍ଧନ ।
ସେହି ରାମଚନ୍ଦ୍ର ବୀର ବନ୍ଦନ ।
ପାଳିବେ ତା'ର ନିର୍ଦ୍ଦେଶ
ଯୁଦ୍ଧ ଯାତ୍ରା ଆଜ କରିବାକୁ ପ୍ରଭୁ ।
ଦିଅନ୍ତୁ ଶୀଘ୍ର ଆଦେଶ । ୧୭ ।

ପ୍ରବୋଧି ଅନୁଜେ ପଦ୍ମଲୋଚନ
ରଚିଲେ ମଧୁର-ତର ବଚନ ।
କରିବା ନିଶ୍ଚୟ ଯୁଦ୍ଧ ଘୋଷଣ
ବୁଝି ତାର ଭାଷା ଭାବ ଲକ୍ଷଣ ।
ଦୁଇ ଗୃହଦିନ ପରେ ଯେ
ଜଣା ପଡ଼ିଯିବ ଥିବ ଯେଉଁ ଭାବ
ରାବଣ ବୀର ଅନ୍ତରେ । ୧୮ ।

—••✿••—

# ଷୋଡ଼ଶ ସର୍ଗ

ରାଗ—କଳହଂସ କେଦାର ।

ରାମ ସୀତା ଯୁଗଳ ମୂର୍ତ୍ତି ଦର୍ଶନ ।
ନିଶୀଥେ ମନ୍ଦୋଦରୀ ଲଭି ସ୍ୱପନ ।
ଚେତ ନ ପାଇ ଭରେ କରୁ କ୍ରନ୍ଦନ ।
ପୁଚ୍ଛିଲେ କୋଳେଧରି କାନ୍ତ କାରଣ, ଯେ । ୧ ।

ଲଙ୍କା ନଗରୀ ରମା ବୋଇଲେ ଧୀରେ—
ରାମ ସୀତା ସ୍ୱପନେ ମୋ ସନ୍ନିଧିରେ ।
ହୋଇଅଛନ୍ତି ଉଭା କଲି ଦର୍ଶନ ।
ଚେତନା ଲଭ୍ଭ କେଣେ ହେଲେ ଗୋପନ, ଯେ । ୨ ।

ଆହା କି ମନୋରମ ରୂପ ମାଧୁରୀ ।
ଗୃହ୍ମି ସର୍ବାଙ୍ଗେ ଗଲି ପୁଲକ ପୂରି ।
ସ୍ୱର୍ଣ୍ଣ ନୀଳେନ୍ଦ୍ର ମଣି ବିଗ୍ରହ ଧରି ।
ଆସିଥିଲେ ବା ମର୍ତ୍ତ୍ୟପୁରେ ବିହରି ଯେ । ୩ ।

ଖେଳଯାଏ କି ନୀଳ ଘନେ ଚପଳା ।
କି ସୌଭାଗ୍ୟ ନାଥ ! ନେତ୍ର ଦର୍ଶନ କଲା ।
ଆହା ସେ ଶୁଚିସ୍ମିତ ମଧୁରାଧର ।
କଟାକ୍ଷ ଛଟା ମୋହନଏ ଅନ୍ତର, ଯେ । ୪ ।

ଅଭୟ ଭୁଜେ ରାଜେ ଶୁଚି କୋଦଣ୍ଡ ।
ସ୍ୱଚ୍ଛ ମୁକୁର ପରି ଦିଶଇ ଗଣ୍ଡ ।
ପ୍ରଫୁଲ୍ଲ କୋକନଦ ପଦ ଯୁଗଳ ।
ମୁନି ମନ-ମାନସ ଲୀଳା କମଳ, ଯେ । ୫ ।

ରାମ ସୀତା ଯୁଗଳ ମୂର୍ତ୍ତି ଦର୍ଶନ ।
ପାରୁ ଯଦି କରାଅ ନାଥ ! ବହନ ।
ନୋହିଲେ ଗଲି ପ୍ରାଣ ହେ ଜୀବଧନ !
କହି ହୋଇଲେ ରାଣୀ ହତ ଚେତନ, ଯେ । ୬ ।

ସଜ୍ଞା ବିହୀନା ମନ୍ଦୋଦରୀଙ୍କ ଧରି ।
ବୋଲେ ରାବଣ ଧନ୍ୟ ଭାଗ୍ୟ ତୋହରି ।
ରାମ ସୀତା ଯୁଗଳ ମୂର୍ତ୍ତି ଦର୍ଶନ-
କରି ତେଜିଲୁ ପ୍ରାଣ ଜୀବ ଜୀବନ, ରେ ! ୭ ।

ହେ ଅନ୍ତର୍ଯାମୀ ନାଥ ବୁଝି ଅନ୍ତର ।
ଦିଅ ଦର୍ଶନ ପ୍ରଭୁ ଆସି ସତ୍ୱର ।
ନୋହିଲେ ହେଲ ନାରୀହତ୍ୟା ପାତକ ।
ହେ ସତୀ ସୀତା ବକ୍ଷ ରତ୍ନ ପଦକ, ହେ । ୮ ।

ତବ ବିଚ୍ଛେଦ ଦେଇଛି ମୁଁ ଘଟାଇଁ ।
ତେଣୁ ସେ ଦୁଃଖ ମୋତେ ଦେଲ ଯୋଗାଇ ।
ଜାଣିଥିବ ତ ପ୍ରଭୁ ମୋର ଅନ୍ତର ।
ଏ ଦାରୁଣ ପରୀକ୍ଷା ଆଉ ନ କର, ଯେ । ୯ ।

ଚେତନାହୀନା ପ୍ରିୟା କୋଳରେ ଧରି ।
ଦଗ୍ଧ ହୃଦେ ନେତ୍ରେ ଲୋତକ ଭରି ।
ବୋଲେ ଫେଡ଼ ଆରତ ଆରତନାଶ ।
ନତୁବା ଯେନ ଏହି ଦମ୍ପତୀ ପ୍ରାଣ ଯେ । ୧୦ ।

ଭକ୍ତ ଅଧୀନ ପ୍ରଭୁ ସୀତା ରମଣ ।
ଭକ୍ତ କାତର ଡାକେ ହୋଇ ଉନ୍ମନ ।
ନିଦ୍ରାଦେବୀଙ୍କ ରାଇ ଦେଲେ ଆଦେଶ ।
ସୈନ୍ୟ ନେତ୍ରେ ଘାରିବା ପାଇଁ ବିଶେଷ, ସେ । ୧୧ ।

ସର୍ବ ଅଜ୍ଞାତେ ସୁବଳପ୍ରା ବର୍ଜନ—
କରି, ଅଶୋକବନେ କଲେ ଗମନ ।
ବୈଦେହୀ ସଙ୍ଗେ ତହିଁ ହେଲେ ବାହାର ।
ବ୍ରହ୍ମା ଶିବେ ଅଜ୍ଞାତ ମାୟା ଯାହାର, ଯେ । ୧୨ ।

ନ ସହି ଭକ୍ତ ଦୁଃଖ ଭକ୍ତବତ୍ସଳ ।
ଦେଲେ ଦର୍ଶନ ଧରି ମୂର୍ତ୍ତି ଯୁଗଳ ।

ଛଠ ମା ମନ୍ଦୋଦରୀ କହୁ କୋମଳେ ।
ବସ ରାଜ ଦମ୍ପତୀ ପଲଙ୍କେ ବଳେ ଯେ । ୧୩ ।

ଚେତ ଉଠିଲେ ମନ୍ଦୋଦରୀ ସୁନ୍ଦରୀ ।
ପୀୟୁଷ ବୋଲ ବାଣୀ ଶ୍ରବଣ କରି ।
ଭକ୍ତ ଦମ୍ପତୀ ଲେଟି ଚରଣ ତଳେ ।
ପୟର ପଖାଳିଲେ ଲୋତକ ଜଳେ, ଯେ । ୧୪ ।

ବୋଲେ ଭକ୍ତ ରାବଣ ହେ ଦୟାମୟ ।
ଜାଣିଲି ଦାସ ପ୍ରତି ଅତି ସଦୟ ।
କରୁଣାକର! ଯଦି କଲ କରୁଣା ।
କେବେହେ ନ କରିବ ଏ ଭବ ଜଣା, ଯେ । ୧୫ ।

ହେ ଅଟଳ ପ୍ରତିଜ୍ଞ ପ୍ରତିଜ୍ଞା କର ।
ପୂରାଇବାକୁ ମନୋରଥ ମୋହର ।
କହିଥିଲେ ନାରଦ ମହର୍ଷି ଥରେ ।
ଲେଖା ହୋଇଛି ତାହା ମୋର ବକ୍ଷରେ, ଯେ । ୧୬ ।

ଲକ୍ଷ୍ମୀ ନାରାୟଣଙ୍କ ପଦ କମଳ ।
ନ ପଡ଼ିଲେ ତୋ ପୁରେ ବ୍ୟର୍ଥ ସକଳ ।
ଯଦି ପକାଇ ପାର ପ୍ରଭୁ ଶ୍ରୀପଦ ।
ଲଭିବ ଲଙ୍କାପୁର ସ୍ୱରଗ ପଦ, ଯେ । ୧୭ ।

ସେଥିପାଇଁ ହେ ପ୍ରଭୁ ଯେତେ କୌଶଳ—
କଲି ମୁଁ, ହୋଇବାକୁ ସବୁ ସଫଳ ।
ମାତା ଆସିଲେ ପିତା ଆସିବେ ଜାଣି ।
ଅଶୋକ ବନେ ସୀତା ରଖିଲି ଆଣି, ଯେ । ୧୮ ।

ଆଜ ପୂରିଲା ମନୋରଥ ମୋହର ।
ହେ ପ୍ରଭୁ ଦରଶନ ଲଭି ତୁମ୍ଭର ।
ସ୍ୱର୍ଗ ହେଲାତ ପ୍ରଭୁ ଲଙ୍କା ନଗର ।
ତବ ଶ୍ରୀମୁଖେ ଥରେ ପ୍ରକାଶ କର, ଯେ । ୧୯ ।

ବୋଇଲେ ସ୍ମିତ ମୁଖେ ରଘୁ ନନ୍ଦନ ।
ହୋଇଲା ଯେବେ ତବ ବ୍ରତ ପୂରଣ ।
ସଙ୍କଳ୍ପ ହେତୁ ସ୍ୱର୍ଗ ହେଲା ନଗର ।
ବୋଲ ଯାଚୁଛି କାର ମୋର ଅନ୍ତର, ଯେ । ୨୦ ।

ହେ ଅଟଳ ପ୍ରତିଜ୍ଞ ! ପ୍ରତିଜ୍ଞା ମୋର,
ପୂରିଲା, ଗଲା ମନୁ ସଂଶୟ ଘୋର,
ଏବେ ତବ ପ୍ରତିଜ୍ଞା କର ପାଳନ,
ହେ ଦେବ ! ସତ୍ୟନିଧି, କାର ବନ୍ଦନ, ଯେ । ୨୧ ।

ସିଂହଳ ସ୍ୱର୍ଗ ଯଦି କଲ୍ପିଲ ହରି,
ସ୍ୱର୍ଗବାସୀ ନରକେ ଯିବେ କପରି,
ହେ ମୁକୁନ୍ଦ, ଏ ପୁରବାସୀଙ୍କ ପାଇଁ,
ମୁକତି ଭଣ୍ଡାରକୁ ଦିଅ ଫିଟାଇ, ଯେ । ୨୨ ।

ସୁଗମ ପଥ ଏକ ଅଛି ଏହାର,
ସ୍ୱୟଂ ରାଜୀବନେତ୍ର କର ବିଚାର,
ତୁମ୍ଭେ ତ ସୂର୍ଯ୍ୟବଂଶ କ୍ଷତ୍ର ନନ୍ଦନ,
ଶଙ୍କାହୀନ ଏ ଲଙ୍କାପୁର ଚେତନ, ଯେ । ୨୩ ।

ରଖ ଉଭୟ କାର ଯଶ ଗୌରବ,
ଧର ଶର ହରଣେ ତବ ସମ୍ଭବ,
ଭୀମ ସମର ଲୀଳା ଲଙ୍କାରେ କରି,
ନରକ ତାପୁ ହରି ଦିଅ ଉଦ୍ଧରି, ଯେ । ୨୪ ।

ଆବର ମନେରଖ ପଦ୍ମ ନୟନ,
ସମରେ ତ୍ୟଜିବେଲେ ମୋର ଜୀବନ,
ଏକତ୍ର ହୋଇ ରାମ ସୀତା ଲକ୍ଷ୍ମଣ,
କରିବ ମୋ ନଗରେ ଥରେ ଭ୍ରମଣ, ଯେ । ୨୫ ।

ଆସି ପୁରତେ ମୋର ହୋଇଲେ ଉଭା,
ବରଜିବ ଜୀବନ ଚିହ୍ନି ସେ ଶୋଭା,

ଏଥିରୁ ଆନ ହେଲେ କୋଦଣ୍ଡ ଧର,
ସତ୍ୟ ଭଗ୍ନ ହୋଇବ ପ୍ରଭୁ ! ତୁମ୍ଭର ଯେ । ୨୬ ।

ଲଙ୍କପତି ଭାରତୀ ଶ୍ରୀରାମ ଶୁଣି,
ଜାନକୀ ମୁଖ ଚାହିଁ ହୋଇଲେ ଗୁଣି,
କି ଛନ୍ଦେ ପକାଇଲା ଭକତ ବର,
ଭାଷ ପ୍ରେୟସୀ କି ଉପାୟ ଆମ୍ଭର, ଗୋ । ୨୭ ।

ମୁଖଭଙ୍ଗୀରୁ ଜାଣି ପ୍ରଭୁ ଅନ୍ତର,
ବୋଲେ ରାବଣ ବୀର କି ଚିନ୍ତା କର,
ସର୍ବ ବ୍ୟାପକ ହୋଇ ବୃଥା ଭାବନା
କରୁଛ, ଯା, ନ କର ବୁଝ କଳନା, ଯେ । ୨୮ ।

ତ୍ରିକାଳଜ୍ଞ ବାଲ୍ମୀକି ମୁନିରଚିତ
ରାମାୟଣଟି ତବ ପୂତ ଚରିତ,
ଜନମ ଠାରୁ ସେତୁବନ୍ଧ ସାଗରେ—
ପର୍ଯ୍ୟନ୍ତ ଲେଖିଗଲେ କବି ବେଗରେ, ଯେ । ୨୯ ।

ବର୍ତ୍ତମାନ ବାଲ୍ମୀକି ବଲ୍ମୀକ ପରି—
ଅଛନ୍ତି ଚିନ୍ତାଧାରା ସ୍ଥିର ନ କରି,
ରାମ ରାବଣ ନିରୁପମ ସମର,
କେବଳ ଅପେକ୍ଷା ହିଁ ଅଛି ତାଙ୍କର, ଯେ । ୩୦ ।

ରାମ ରାବଣ ଯୁଦ୍ଧ ରାମାୟଣରେ,
ଶୁଣି ଅଦ୍ଭୁତ ବୋଲି ମଣିବେ ନରେ,
ଲଙ୍କାରେ ତବ ଶୁଭାଗମ ଉତ୍ସବ,
ଅର୍ପିବ ମୋତେ କାଲି ମୁଖ୍ୟ ବାନ୍ଧବ, ଯେ । ୩୧ ।

ତା'ପରେ ଯୁଦ୍ଧ ଯାତ୍ରା କୋଦଣ୍ଡ ଧର,
କରନ୍ତୁ ଅନୁରୋଧ ଦେବନ ମୋହର,
ସଶସ୍ତ୍ରାନେ ରହିବା ନୁହେ ଉଚିତ,
କହୁଛନ୍ତି ନୀତିଜ୍ଞ ବର ପଣ୍ଡିତ, ଯେ । ୩୨ ।

ଏଣୁ ଶୀଘ୍ର ବଦାୟୁ ଧରା ଧାମରୁ
ଦଅନ୍ତୁ ମୋତେ ବାଞ୍ଛା କଳ୍ପତରୁ,
ଏତେ ଭାଷି ଭକତ ରାଜଦମୟନ୍ତୀ,
ଶ୍ରୀରାମ ସୀତା ପଦେ କଲେ ପ୍ରଣତ, ଯେ । ୩୩ ।

ବୋଇଲେ ରାମ, ଧନ୍ୟ ଭକ୍ତ ଦମୟନ୍ତୀ,
ଧନ୍ୟ ନୀତଙ୍କ ତୁମ୍ଭ ପବିତ୍ର ମତି,
ତ୍ୟାଗୀ ପଣ୍ଡିତଗଣ ମଣ୍ଡଳ ମଣି,
ବୀର ମୁକୁଟ ଗୁଣ ରତନ ଖଣି, ହେ । ୩୪ ।

ତୁମ୍ଭର ମନୋରଥ ହେବ ପୂରଣ,
କହି ଶ୍ରୀରାମ ସୀତା ହେଲେ ଗୋପନ,
ବ୍ୟାକୁଳେ ଚଉପାଶେ କରୁ ଲୋକନ,
ଦିଶିଲା ପୂର୍ବ ଦିଗେ ଉଷା ଶୋଭନ, ଯେ । ୩୫ ।

ସୁବେଲସ୍ଥା ପର୍ବତେ ରଘୁ ନନ୍ଦନ,
ରମ୍ୟ ଅଶୋକ ବନେ ସତୀ ରତନ,
ମିଳିଲେ ଭକ୍ତବାଞ୍ଛା କରି ପୂରଣ,
ସର୍ବ ଅଙ୍ଗରେ ଧରାଭାର ହରଣ, ସେ । ୩୬ ।

କାମନା କଳ୍ପଲତା ସୁର ବନ୍ଦନୀ,
ବିଘ୍ନନାଶିନୀ ନଗବର ନନ୍ଦନୀ,
ସେ ଅଭୟ ବରଦା ପଦ ପଲ୍ଲବ,
କରୁଣା ରେଣୁ ଲଭି କହେ ମାଧବ, ଯେ । ୩୭ ।



# ସପ୍ତଦଶ ସର୍ଗ

ରାଗ—ମଙ୍ଗଳ

ଲଙ୍କେଶ ସୌଭାଗ୍ୟ ନିଶା ଶେଷେ ଉଦେ ରବି,
ପୂର୍ବଦିଗେ ଧରି ସ୍ୱର୍ଣ୍ଣବୋଳ ରଙ୍ଗଛବି । ୧ ।
ରାଜଦମ୍ପତି ପ୍ରଭାତୁ ନିତ୍ୟକର୍ମ ଶେଷ
କରି, ଭୃତ୍ୟଗଣେ ରାଜ ଦିହଲେ ଆଦେଶ । ୨ ।
ନଗରେ ଆରମ୍ଭ କର ଏକ ମହୋତ୍ସବ,
ବ୍ୟୟକର ରାଜକୋଷ ଅମିତ ବିଭବ । ୩ ।
ଲାଗିଗଲା ମହୋତ୍ସବ ସିଂହଳ ସ୍ୱର୍ଗରେ,
ଯାଗଯଜ୍ଞ ଦାନ ସଦାବର୍ତ୍ତ ଆଡମ୍ବରେ । ୪ ।
ବାଜି ଉଠିଲା ପଞ୍ଛଝ ଝମକ ମର୍ଦ୍ଦଳ,
ଭେରୀ ତୂରୀ ନାଦେ କମ୍ପେ ନଗର ମଣ୍ଡଳ । ୫ ।
ବାଣ କମାଣ ଶବଦେ ଚମକଇ ମହୀ,
ଅସଂଖ୍ୟ ଶବଳମାଳ ଗଗନେ ଉଡଇ । ୬ ।
ରାଜବାଟ ପୂର୍ଣ୍ଣକୁମ୍ଭ ରଖିଲେ ନଗରେ,
ପୂର୍ଣ୍ଣ ହୋଇ ଜଳ ନାରିକେଳ ପଲ୍ଲବରେ । ୭ ।
ଶତଶତ ଚନ୍ଦ୍ରାତପ ମୋହିଲେ ନୟନ,
ରୋଧି ଗଗନେ ପ୍ରଚଣ୍ଡ ମିହିର କିରଣ । ୮ ।
ବେଦଗାନ କଲେ ଋଷି ପଣ୍ଡିତ ମଣ୍ଡଳ,
ବୀର ବାଦ୍ୟେ ଚମକିଲେ ଦେବ ଆଖଣ୍ଡଳ । ୯ ।
ଢାଲଖଣ୍ଡା କରେ ଧରି ବକ୍ଷ ଚମକାଇ,
ବୀରେ ନୃତ୍ୟ ଆରମ୍ଭିଲେ ବାଦ୍ୟତାଳ ଧ୍ୟାୟୀ । ୧୦ ।
ପ୍ରତି ପଥ କେନ୍ଦ୍ରେ ହୋଇ ତୋରଣ ସଜ୍ଜିତ,
କରୁଛି ଅମରପୁର ସୁଷମା ଲଜ୍ଜିତ । ୧୧ ।

ଗାନେ ମନ ହରୁଛନ୍ତି ଅପସରାଗଣ,
ଯେ କରିପାରନ୍ତି ମୁନିମନ ଆକର୍ଷଣ । ୧୨ ।
ସଜଗଜ, ବାଜି—ରାଜ-ରାଜ ରାଜପୁରେ,
ବିହରନ୍ତି, ପୃଷ୍ଠେ ଧରି ଶସ୍ତ୍ରହସ୍ତ ଶୂରେ । ୧୩ ।
ପୁରି ପ୍ରତି ବିପଣିରେ କଳଯନ୍ତ୍ର ମାନ,
ମୋହୁଥାନ୍ତି କରି ମନୋରମ ଗୀତଗାନ । ୧୪ ।
ସ୍ଥାନେ ସ୍ଥାନେ ନାନାବିଧ ଖାଦ୍ୟ ଦ୍ରବ୍ୟମାନ,
ଧର୍ମଅଙ୍ଗେ ରାଜଭୃତ୍ୟେ କରୁଥାନ୍ତି ଦାନ । ୧୫ ।
ସୁସଜ୍ଜିତ ହୋଇ ରାଜାରାଣୀ ସଙ୍ଗତରେ,
ବାହାରିଲେ ପଦବ୍ରଜେ ବିହରି ନଗରେ । ୧୬ ।
ବାଜି ଉଠିଲା ସେକାଳେ ଦର୍ ଭେରୀତୂରୀ,
ଜଗଝମ୍ପ ସଙ୍ଗେ ଢୋଲ ମର୍ଦ୍ଦଳ ମହୁରୀ । ୧୭ ।
ଯେଝା ମତେ ସଜ ହୋଇ ରାଜ ପଟୁଆର,
ରାଜାରାଣୀ ସଙ୍ଗେ ପୁରୁ ହୋଇଲେ ବାହାର । ୧୮ ।
ଘୃତଦୀପ ଜାଳି ପୁର କୁଳବଧୂଗଣେ,
ବନ୍ଦାଇ ଚଳିଲେ ପଛେ ଅବଳା ଗହଣେ । ୧୯ ।
ଲଡୁ ନାରିକେଳ ସ୍ୱର୍ଣ୍ଣମୁଦ୍ରା ଧରି କରେ,
ଭୃତ୍ୟେ ବୁଣି ଦେଉଥାନ୍ତି ନଗର ପଥରେ । ୨୦ ।
ଶସ୍ତ୍ର ହସ୍ତେ ଶତଶତ ରାଜଭୃତ୍ୟ ଗଣ,
ଚଳୁଥାନ୍ତି ବୀରବେଶେ ମଣ୍ଡି ଅପଘନ । ୨୧ ।
ଅସଂଖ୍ୟ କମାଣ ଘୋଷ ଉଠିଲା ଗରଜି,
ଭୟାକୁ ଅନ୍ତରେ ଭୀମ ଚମକ ସରଜି । ୨୨ ।
ଚଳୁଥାନ୍ତି ରାଜାରାଣୀ ଯୋଡି ବେନିକର,
ଜପକରି ପୂତନାମ ତାରକ ମନ୍ତ୍ରର । ୨୩ ।
ଲଙ୍କା ସ୍ୱର୍ଗ ହେଲା ମୁଖେ କରି ଉଚ୍ଚାରଣ,
ଚଳୁଥାନ୍ତି ପୁରଜନେ ନବୁଝି କାରଣ । ୨୪ ।

ତ୍ରିକାଳଜ୍ଞ ସୁମନ ସେ ରଙ୍ଗ ମନ ଜାଣି,
କୁସୁମ ବର୍ଷିଲେ ଶିରେ ସହ ବଜ୍ରପାଣି । ୨୫ ।

ଅଭୟ ବରଦା ଲଙ୍କଦେବୀ ଦର୍ଶନେ,
କର ବାହାର ହୋଇଲେ ଭୂପତି ରତନ । ୨୬ ।

ପୁର ସର୍ବ ଦେବ ଦେବୀ ଦରଶନ କରି,
ବିଦାୟ ମାଗନ୍ତି ନେବେ ମୋଦ-ଅଶ୍ରୁଭର । ୨୭ ।

ଅଶୋକ ବନେ ପ୍ରବେଶି ଶୋକ ଗଦଗଦେ,
ପ୍ରଣମି ବୋଇଲେ ସତୀ ତପସ୍ୱିନୀ ପଦେ । ୨୮ ।

ନେଉଛୁ ବିଦାୟ ମାଗୋ ନ ହୋଇ ନିର୍ଦ୍ଦୟ,
ଅଧମ ସନ୍ତାନେ ଥିବ ସର୍ବଦା ସଦୟ । ୨୯ ।

ଭକତ ଶେଷ ବିଦାୟ ମାଗେ କରି ସ୍ଥିର,
ବୋଇଲେ ସତୀ ରତନ ହୋଇଣ ଅସ୍ଥିର । ୩୦ ।

କି ବିଦାୟ ମାଗୁ ବତ୍ସ ! ବିରସ ବଚନ,
ମହିଷ ମର୍ଦ୍ଦିନୀ ରୂପେ ଦେଲେ ଦରଶନ । ୩୧ ।

ହେ ଭକ୍ତ ଶେଷ ବିଦାୟ ମନୁ ଦୂର କରି,
ସୁଖେ ଭୋଗ କର ରହି କନକ ନଗରୀ । ୩୨ ।

କେ କଲେ ତୋ ପ୍ରତି ବୈରଭାବ ଆଚରଣ,
ନିଶ୍ଚୟ କରିବି ମୁହିଁ ଶସ୍ତ୍ର ଉତ୍ତୋଳନ । ୩୩ ।

ପଞ୍ଚବଟୀ ବନୁ ଯାକୁ ଆଣିଛି ମୁଁ ଧରି,
ଭାବୁଥିବୁ ସେ ବା ରକ୍ଷା କରିବ କିପରି । ୩୪ ।

ଅବଳା ନାରୀ ଧାରଣା ମନୁ ପରିହରି,
ଶିବଧନୁ ଭଗ୍ନକାଳ କଥା ମନେ କର । ୩୫ ।

ମିଥିଳାକୁ ଆସିଥିଲେ ଲକ୍ଷେ ମହାରଥି,
ଯେଉଁ ଧନୁ ଟେକିବାକୁ ନ ହେଲେ ଶକତି । ୩୬ ।

ସେ ଧନୁକୁ କ୍ରୀଡ଼ନକ ସମ ବାମ କରେ,
ଧରି ନିଜ ଧନୁଶାଳ ମାର୍ଜନା ମୁଁ କରେ । ୩୭ ।

ଜାଣିଲି ଲଙ୍କାକୁ ଆସି ତୋର ମନକଥା,
ପତିତ୍ରାଣ ହେତୁ ଲଭ ହୃଦେ ଗୁରୁବ୍ୟଥା । ୩୮ ।

ନାରୀ ତ୍ରାଣେ କରିଛୁ ତୋ ସ୍ୟନ୍ଦନେ ବନ୍ଦନ,
ତେଣୁ ରଖିଥିଲୁ ମୋତେ ଅବଳା ରାବଣ । ୩୯ ।

ଅଭୟ ବରଦାଙ୍କର ଅଭୟ ବଚନ—
ଶୁଣି, ବିକ୍ରମ ମୂରତି କରି ଦରଶନ । ୪୦ ।

ସ୍ତବ କଲେ କରଯୋଡ଼ି ଗରୁଡ଼ ଆସନେ,
ଆଦେଶେ ରାଜ ଦମ୍ପତି ସଜଳ ନୟନେ । ୪୧ ।

ଜୟ ଜଗଦମ୍ବେ ସର୍ବଶକ୍ତି ସ୍ୱରୂପିଣୀ !
ଭକତ ବତ୍ସଳା ! ଜନୁତାପ ବିଧ୍ୱଂସିନୀ । ୪୨ ।

ସର୍ବ ଶକ୍ତିମୟି ! ପଞ୍ଚପ୍ରାଣ ସ୍ୱରୂପିଣି !
ଭୁଲ ନାହିଁ, କରିଅଛି ମୁଁ ଯେଉଁ ଦୟିନୀ । ୪୩ ।

ଭୋଗିବାକୁ ରାଜସୁଖ ନାହିଁ ମୋର ମନ,
ତବ କୃପାବଳେ ସବୁ ହୋଇଛି ପୂରଣ । ୪୪ ।

ଯଶ ଲଭୁ ଶସ୍ତ୍ରେ ଶାସ୍ତ୍ରେ ଉଭୟେ ନନ୍ଦନେ,
ଦୀର୍ଘାୟୁ ସୌଭାଗ୍ୟେ ଦେଶ ଗୌରବ ବର୍ଦ୍ଧନେ । ୪୫ ।

କେବଳ ଥିଲା ସଙ୍କଳ୍ପ ଲକ୍ଷ୍ମୀ ନାରାୟଣ,
କରିବେ ଯଦି ଆସି ଏ ଲଙ୍କାରେ ଭ୍ରମଣ । ୪୬ ।

ଅମର ପୁଣ୍ୟ ଗୌରବ ଲଭିବ ଏ ଦେଶ,
ଦେଇଥିଲେ ତ୍ରିକାଳଜ୍ଞ ନାରଦ ଆଦେଶ । ୪୭ ।

ତବ ଆଗମନେ ହେଲ ଏଦେଶ ସ୍ୱଦେଶ,
ଶୋଭିଲ ସର୍ବତ୍ର ସୌଧେ କନକ କଳସ । ୪୮ ।

ଚକ୍ରପରି ଭ୍ରମୁଛି ମା ! ସଂସାରର ଗତି,
ଘଟିପାରେ ଏହା ପରେ କୌଣସି ଦୁର୍ଗତି । ୪୯ ।

କିନ୍ତୁ ହେଲେ ମୃତ୍ୟୁ ସତ୍ୟ ହୋଇବାର କଥା,
ଜାଣିଶୁଣି ବୃଥା ମାଗୋ ! ଲଭ ନାହିଁ ବ୍ୟଥା । ୫୦ ।

ରାମ ରାଜୀବ ଲୋଚନ ଶରେ ମୋ ଜୀବନ,
ଗଲାବେଳେ ପାଇବ ମୁଁ ଯେପରି ଦର୍ଶନ । ୫୧ ।

ଶ୍ରୀରାମ ସୀତା ଲକ୍ଷ୍ମଣ ମୁଖ ନିରୀକ୍ଷଣ,
କରି ଚାଲିଯିବ ପିଣ୍ଡୁ ମୋହର ଜୀବନ । ୫୨ ।

ଦିଅ ଜନନୀ ! ବିଦାୟ କହି ପ୍ରଣମିଲେ,
ସତୀ ସଜଳ ନୟନେ ଆଶୀଷ ବର୍ଷିଲେ । ୫୩ ।

ଧନ୍ୟ ହେ ରାବଣ ବୀର ଭକ୍ତ ଚୂଡ଼ାମଣି ।
ସୁଜ୍ଞାନୀ ପଣ୍ଡିତ ସର୍ବ ଗୁଣ ରତ୍ନ ଖଣି । ୫୪ ।

ଧନ୍ୟ ଅଟଳ ପ୍ରତିଜ୍ଞା ତ୍ୟାଗ ଗୁଣ ଧନ୍ୟ ।
ସ୍ୱଦେଶବତ୍ସଳ ନାହିଁ ତୋପରି କେ ଅନ୍ୟ । ୫୫ ।

କି ହେବ କୋଟି ସନ୍ତାନ ଧରି ବସୁମତୀ ।
ଗୋଟିଏ ସନ୍ତାନ କରେ ଉଜ୍ଜ୍ୱଳ ଜଗତ । ୫୬ ।

ଯାଅ ବତ୍ସ ପୂର୍ଣ୍ଣ ହେଉ ସାଧୁ ମନସ୍କାମ ।
ଅମର ଅକ୍ଷରେ ଧରା ଘୋଷୁ ତୋର ନାମ । ୫୭ ।

ଯାବତ ଥିବେ ଧରଣୀ ସୂର୍ଯ୍ୟ କଳାକର ।
ତାବତ ରହୁ ଅମର ଗୌରବ ତୋହର । ୫୮ ।

ଜାନକୀ ପଦ ପଙ୍କଜ ରେଣୁ ଲଭି ଶିରେ ।
ପବନ ରାଜ ଦମ୍ପତୀ ଗମିଲେ ନଗରେ । ୫୯ ।

ଜୟ ଦୁର୍ଗା ପାଦପଦ୍ମେ କରି ନମସ୍କାର ।
କାବ୍ୟ ପୂର୍ଣ୍ଣପରେ କବି କରଇ ଜୁହାର । ୬୦ ।

ନୂତନ କଳ୍ପନା ବୋଲି ବର୍ଣ୍ଣିବେ ଧୀରେ ।
ପୁରାଣ କଳ୍ପନା କଥା ଅଟେ ତ ବିଧିରେ । ୭୧ ।

ବିଷୟବସ୍ତୁର ହେତୁ ଚରିତ୍ର ଚିତ୍ରଣ ।
କାବ୍ୟ ନାୟକର ଅଟେ ପବିତ୍ର ଭୂଷଣ । ୭୨ ।

କର୍କଶ ଅତିରଞ୍ଜିତ ଅବାନ୍ତର କଥା ।
ବିବେକୀ ପାଠକ ହୃଦେ ଦାନକରେ ବ୍ୟଥା । ୭୩ ।

ପ୍ରତ୍ୟେକ ସ୍ଥଳରେ କରି ହେତୁ ନିରୀକ୍ଷଣ ।
ଦୟାକରି ସୁଧୀବର୍ଗ କରିବେ ପଠନ । ୭୪ ।

କି ଅଦ୍ଭୁତ କଥା ଏହି କାବ୍ୟ ସମାପନ— ।
ହେଲ ବେଳେ ଧନ୍ୟ ମୋର ହେଉଛି ନୟନ । ୭୫ ।

ଅବିକଳ ଦିଶିଯାଏ ନୟନେ ମୋହର ।
ମୋ ସ୍ୱର୍ଗୀୟ ପିତାଙ୍କର ସ୍ୱରୂପ ସୁନ୍ଦର । ୭୬ ।

ଦିଶିଯାଏ ମୃଦୁସ୍ମିତ ସୁରଙ୍ଗ ଅଧର ।
କପୋଳେ ସିନ୍ଦୁର ଛଟା ଯଥା ମନୋହର । ୭୭ ।

ପରିଧାନ କରି ରମ୍ୟ ରଙ୍ଗିମା ବସନ— ।
ବସି କରୁଥାନ୍ତି ଯଥା ପୁରାଣ ପଠନ । ୭୮ ।

ହେ ପିତଃ ! ତୁମ୍ଭର ନାମ ଅଟେ ଶିବଗ୍ରାହୀ ।
ବାତ୍ସଲ୍ୟ ଭାବ ମୋଠାରେ ରଖିଅଛ ସ୍ଥାୟୀ ! ୭୯ ।

ହେ ସ୍ୱର୍ଗୀୟ ପିତୃଦେବ ! ତୁମ୍ଭର କରୁଣା ।
ଅନ୍ତିମେ ସୁଦ୍ଧା ମୋ ପ୍ରତି ନୋହୁଛି ଯା, ଊଣା । ୮୦ ।

"ଭକ୍ତ କଳ୍ପଲତା" "ସତୀ ଚନ୍ଦ୍ରିକା" ଲେଖକନେ ।
ଯେଉଁ ହାସ ଦେଖିଥିଲି ତୁମ୍ଭର ବଦନେ । ୮୧ ।

ଆଜି ଅମର ଗୌରବ କାବ୍ୟ ପୂର୍ଣ୍ଣ କରି ।
ସେ ହର୍ଷ ବଦନ ନେତ୍ର ଦେଖୁଛି ମୋହର । ୮୨ ।

ପୁନର କର୍ତ୍ତବ୍ୟ ମୂର୍ଦ୍ଧି କରୁ କରି ନାହିଁ ।
ପିତାଗୁଣ ରଖିଅଛ ସବୁ କ୍ଷମା ଦେଇ । ୭୩ ।

ତୁମ୍ଭେ ଜ୍ଞାନୀ ସୁପଣ୍ଡିତ ସେବ ଶକ୍ତ ପଦ ।
ଅର୍ପଣ କରଛ ସେହି ଅତୁଳ ସମ୍ପଦ । ୭୪ ।

ତାହାକୁ ସମ୍ବଳ କରି ମାଧବ ତୁମ୍ଭର ।
ବାନ୍ଧି ରହିଅଛି କରି ତା, ମୂଳ ମନ୍ତ୍ରର । ୭୫ ।

ଅମର ଗୌରବ କାବ୍ୟ କଲି ସମର୍ପଣ ।
ତବ କର କଞ୍ଜେ ଆଜ ହେ ଧୀର ରତନ । ୭୬ ।

ଶିଶୁ ଦତ୍ତ ଧୂଳି, ଜନ ନ୍ୟାପ୍ରେ ଗ୍ରହଣ— ।
କରିବେ ନିଶ୍ଚୟ ଯେଣୁ ଜନକ ଆପଣ । ୭୭ ।

ଶତ ନମସ୍କାର କରି ନେଉଛି ବିଦାୟ ।
ତୁମ୍ଭର ବାତ୍ସଲ୍ୟ ସ୍ନେହ ହେଉ ମୋ ସହାୟ । ୭୮ ।



PRINTED AT THE ORISSA MISSION PRESS, CUTTACK
BY SRI P. K. PRADHAN.